*EDUCATION DEPARTMENT, BENGAL.*

# MODEL URIYA READER

FOR

STANDARD I.

*(ILLUSTRATED)*

---

ଓଡ଼ିଆ

# ବାଲ୍ୟ ପାଠ ।

ପ୍ରଥମ ଭାଗ ।

( ସଚିତ୍ର ।)

LAL CHAND AND SONS

CALCUTTA.

*Price One Anna.* ମୂଲ୍ୟ [illegible]ଣା ।

# ବାଲ୍ୟ ପାଠ ।

## ପ୍ରଥମ ଭାଗ ।

### ଉପଦେଶ ।

କହିବ ସଦା ସତ୍ୟ କଥା
କେବେହେଁ ନ କର ଅନ୍ୟଥା ।

କର୍କଶ କଥା ନ କହିବ
କୋମଳ କଥାରେ ତୋଷିବ ।

ଜନନୀ ପିଅର ବଚନ
ବାଳକେ ନ କର ଲଙ୍ଘନ ।

ସକଳ ଜୀବେ ଦୟା ବହ,
କାହାକୁ କୁକଥା ନ କହ ।

ଆଳସ୍ୟ ଦୁଃଖର କାରଣ
ଶ୍ରମରେ ସୁଖ ହୁଏ ଜାଣ ।

ସର୍ବଦା ଶ୍ରମ କରୁଥାଅ
ଆଳସ୍ୟ ପାଖକୁ ନ ଯାଅ ।

ମାନ ତଳବ ଗୁରୁବାଣୀ
ସେ ତୁମ୍ଭ ହିତେ ଥାନ୍ତି, ଜାଣି

ଈଶ୍ୱର ଜଗତର ସାଇଁ
ନମିବ ତାଙ୍କୁ ମନେ ଧ୍ୟାଇ ।

# ଗୋରୁ ।

ଅମ୍ଭେମାନେ ଯେତେବେଳେ ନତାନ୍ତ ସାନ, ତେତେବେଳେ ମାଙ୍କ-ଠାରୁ ଦୁଧ ଖାଇ ବଞ୍ଚୁଥାଉଁ । କିଛି ବଢ଼ିଲେ ଅମ୍ଭେମାନେ ଗାଈ-ଦୁଧ ମଧ୍ୟ ପିଉଁ । ଗାଈ, ବାଛୁରି, ବଳଦ ଏ ସମସ୍ତଙ୍କୁ ଗୋରୁ କୁହାଯାଏ । ଆମ୍ଭମାନଙ୍କର ଦେହର ଲୋମ ସାନ ଓ ଛଡ଼ା ଛଡ଼ା ହୋଇଥାଏ । ମାତ୍ର ଗୋରୁମାନଙ୍କର ଲୋମ କିଛି ବଡ଼ ଓ ଅତି ଗହଳିଆ । ଶିଙ୍ଗ ଓ ଖୁରା ଛାଡ଼ି ଗୋରୁ ଦେହରେ ସବୁଠାରେ ଲୋମ ଥାଏ । ଆମ୍ଭମାନଙ୍କର ମୁହଁ ମଧ୍ୟରେ ପୂର୍ବ ଦୁଇ ପାଟି ଦାନ୍ତ ଅଛି, ମାତ୍ର ସେମାନଙ୍କର ସେପରି ନ ଥାଏ । ଆମ୍ଭମାନଙ୍କର ତଳରେ ଯେପରି ଦାନ୍ତ ଅଛି, ସେମାନଙ୍କର ତଳରେ ସେହିପରି ଦୁଇ ପାଟିରେ ପାଞ୍ଚଟି ଲେଖାଏଁ କୋଡ଼ିଏଟି ଦାନ୍ତ ଥାଏ । ସେମାନଙ୍କର ଉପର ପାଟିରେ ଛମୁଦାନ୍ତ ନ ଥାଏ । ତଳ ପାଟିର ଛମୁଦାନ୍ତ ଆମ୍ଭମାନଙ୍କର ଛମୁଦାନ୍ତପରି ଅଟେ । ଗୋରୁମାନେ ଜାକି ହଲାଇ ପାରନ୍ତି । ଜନ୍ମ ସମୟରେ ସେମାନଙ୍କର ଶିଙ୍ଗ ନ ଥାଏ । କିଛି ବଡ଼ ହେଲେ ଶିଙ୍ଗ ବାହାରେ । ଗାଈ ବଳଦମାନଙ୍କର ଶିଙ୍ଗ ନାନା

ପ୍ରକାର ହୁଏ । ସେମାନଙ୍କ ଗୋଡ଼ରେ ଅଙ୍ଗୁଳି ନାହିଁ, ଖୁରା ଅଛି । ଏହି ଖୁରା ଚିରା ହେଲାପରି ଦୁଇ ଫାଳ ହୋଇଥାଏ, ଏବଂ ଶିଙ୍ଗପରି ଟାଣ ଅଟେ । ଗୋରୁମାନେ ଶୋଇବାବେଳେ ପ୍ରଥମେ ଆଗ ଦୁଇ ଗୋଡ଼ ଭାଙ୍ଗନ୍ତି । ସେମାନଙ୍କର ଲାଙ୍ଗୁଡ଼ ଅଗରେ ଲୋମଗୁଡ଼ିକ ବଡ଼ ବଡ଼ ଅଟେ ଓ ସୁନ୍ଦର ଦିଶେ ।

ଗୋରୁମାନେ ଘାସ, ଗଛର ପତ୍ର, ନଡ଼ା ଓ କୁଟା ଖାଇ ବଞ୍ଚନ୍ତି । ସେମାନେ ବରକୋଳି, କୋଳଥ, ବାଜ, ମୁଗ, ଧାନ, କୁଣ୍ଡା ଓ ଭାତ ମଧ୍ୟ ଖାନ୍ତି । କେହି କେହି ଗୋରୁମାନଙ୍କୁ ପୀଡ଼ିଅ ଖୁଅନ୍ତି । ସେମାନେ ଯାହା ଖାନ୍ତି ତାହା ଉତ୍ତମରୂପେ ଚୋବାଇ ଖାନ୍ତି । ପାଣି ତୋରାଣି ବା ପେଜ ପିଇଲାବେଳେ, ସେମାନେ ମୁହଁ ଲଗାଇ ତାହା ଶୋଷିନିଅନ୍ତି

ଗୋରୁମାନେ ଅମ୍ଭମାନଙ୍କର ବଡ଼ ଉପକାରୀ ଅଟନ୍ତି । ଅମ୍ଭେମାନେ ସମସ୍ତେ ଗାଈର ଦୁଧ ଖାଉଁ, ଏବଂ ଦୁଧରୁ ଯେଉଁ ଲହୁଣୀ, ଘିଅ, ଦହି ଓ ଛେନା ହୁଏ, ସେଗୁଡ଼ିକ ମଧ୍ୟ ଖାଉଁ । ଦୁଧ, ଘିଅ ଓ ଛେନାରେ ନାନା-ପ୍ରକାର ପିଠା ଲଡ଼ୁ ପ୍ରଭୃତି ହୁଏ । ଦୁଧ, ଲହୁଣୀ, ଘିଅ ଓ ଛେନା ଖାଇଲେ ଅମ୍ଭମାନଙ୍କର ଦେହ ସୁନ୍ଦର ହୁଏ ଓ ବଳ ବଢ଼େ । ବଳଦ ହଳକରେ, ଶଗଡ଼ ଟାଣେ ଏବଂ ବୋଝ ଲଦିଦେଲେ ନେଇଯାଏ । ଗୋରୁ ମରିଗଲେ ସେମାନଙ୍କର ଚମ ଓ ଶିଙ୍ଗରେ ନାନା ପଦାର୍ଥ ଉତ୍ପନ୍ନ ହୁଏ । ଗୋରୁ ନ ଥିଲେ ଅମ୍ଭମାନଙ୍କୁ ବଡ଼ ଅସୁବିଧା ହୁଅନ୍ତା । ଗୋରୁ ଦ୍ୱାରା ଅମ୍ଭମାନଙ୍କର କେତେ ଉପକାର ହେଉଅଛି । ଅମ୍ଭମାନଙ୍କର ଉଚିତ, ଗୋରୁଙ୍କୁ ଯତ୍ନରେ ଖୁଆଇବୁଁ, ଆଉ ତାଙ୍କୁ କଷ୍ଟ ଦେବୁଁ ନାହିଁ ।



## ପାଠ ଓ ତାହାର ବାଛୁରୀ ।

ଜଣେ ଲୋକର ଗୋଟିଏ କଷରା ଗାଈ ଥିଲା । ତାହାର ନାମ ପାଠ । ପାଠର ଗୋଟିଏ ବାଛୁରୀ ହେଲା । ସେ ତାହା ମା ସଙ୍ଗରେ ଚରୁଥାଏ । ଦିନେ ନାରାୟଣ ନାମରେ ଗୋଟିଏ ବାଳକ ସେହି ବାଛୁରୀ ପାଖକୁ ଗଲା । ପାଠ ମନେକଲା ତାହାର ଛୁଆକୁ ମାରିବାପାଇଁ ବାଳକଟି ଆସି-ଅଛି । ସେ ମୁଣ୍ଡ ଟିକିଏ ନୁଆଁଇ ନାରାୟଣ ଆଡ଼କୁ ଦୌଡ଼ିଲା । ନାରା-

ମୃଗ ପଳାଇ ଯାଉଁ ଯାଉଁ ଗାଈ ତାହା ପାଖରେ ପହଞ୍ଚିଗଲା, ଏବ ତାହା ପେଟରେ ଶିଙ୍ଗ ଦଓଣ୍ଟି ଲଗାଇ ତାକୁ ତଳେ ପକାଇଦେଲା । ଏହି ସମୟରେ ଜଣେ ମନୁଷ୍ୟ ଦୌଡ଼ିଆସି ଗାଈକୁ ଘଉଡ଼ାଇଦେଲା, ଏବ ନାରାୟଣଙ୍କୁ ତଳୁ ଉଠାଇନେଲା ।

ସବୁ ଜୀବ ଆପଣା ଛୁଆକୁ ଭଲପାନ୍ତି ।

## ବିରାଡ଼ି ।

ପ୍ରାୟ ସମସ୍ତଙ୍କ ଘରେ ବିରାଡ଼ି ଅଛି । ଗୋରୁପରି ବିରାଡ଼ିର ମଧ୍ୟ ଚାରିଗୋଟି ଗୋଡ଼ ଓ ଗୋଟିଏ ଲାଙ୍ଗୁଡ଼ ଅଛି । ମାତ୍ର ବିରାଡ଼ିର ଶିଙ୍ଗ ନାହିଁ । ଏହାର କାନ ଗୋରୁ କାନଠାରୁ ସାନ ଅଟେ, ଏବ ମୁହଁ ଗୋରୁ ମୁହଁପରି ଲମ୍ବ ନୁହେ । ଗୋରୁ ଦେହର ଲୋମଠାରୁ ବିରାଡ଼ି ଦେହର ଲୋମ ବଡ଼ ଓ ନରମ ଅଟେ । ଗୋରୁ ଲାଙ୍ଗୁଡ଼ର ଅଗରେ ବଡ଼ ବଡ଼ ଲୋମ ଥାଏ । ମାତ୍ର ବିରାଡ଼ି ଲାଙ୍ଗୁଡ଼ର ସବୁଠାରେ ଲୋମ ସମାନ । ବଡ଼ ବଡ଼ ସବୁ ଲୋମ ଥିବାରୁ ବିରାଡ଼ିଦେହ କୋମଳ ଲାଗେ । ବିରାଡ଼ିମାନଙ୍କର ନାକତଳେ ଦୁଇ ପାଖରେ ଲମ୍ବ ଲମ୍ବ କରଡ଼ା ଲୋମ ନିସପରି ଦିଶେ । ବିରାଡ଼ି ମଧ୍ୟ କାନ ହଲାଇପାରେ । ମାତ୍ର ଗୋରୁ ଯେତେଦୂର କାନ ହଲାଇପାରିବ, ବିରାଡ଼ି ସେତେ ପାରିବ ନାହିଁ । ବିରାଡ଼ିମାନଙ୍କର ଗୋଡ଼ରେ ନଖ ଅଛି । ସେମାନଙ୍କର ନଖଗୁଡ଼ିକ ମୁନିଆଁ । ଏଗୁଡ଼ିକ ମାଂସମଧ୍ୟରେ ପଶିଥାଏ । ବିରାଡ଼ି କୌଣସି ପଦାର୍ଥରେ ଗୋଡ଼ ମାରିଲେ ସେଗୁଡ଼ିକ ବାହାରିପଡ଼େ । ସେମାନଙ୍କ ଗୋଡ଼ତଳେ ମାଂସପିଣ୍ଡୁଳା ଥାଏ । ତେଣୁ ସେମାନେ ଚାଲିଲେ ଶବ୍ଦ ହୁଏ ନାହିଁ । ଅନ୍ଧକାରରେ ବିରାଡ଼ି ମୂଷା ଧରିବାକୁ ଗଲେ, ମୂଷା ତାହା ଜାଣିପାରେ ନାହିଁ । ବିରାଡ଼ିମାନଙ୍କର ଦାନ୍ତ ମୁନିଆଁ ।

ବଘ୍ରାଡ଼ି ମାଛ ଖାଏ, ମାଂସ ଖାଏ, ଏବଂ ଭାତ, ଦୁଧ ଓ ଘିଅ ମଧ୍ୟ ଖାଏ । ଗୋରୁ ଯେପରି ମୁହଁ ଲଗାଇ ପାଣି ତୋରାଣି ଶୋଷିନିଏ, ବିରାଡ଼ି ସେପରି ପିଇପାରେ ନାହିଁ, ସେ ଜିଭରେ ଚୁକୁଲି ଚୁକୁଲି ଦୁଧ ବା ପାଣି ପିଏ । ମାଛ ବା ମାଂସର କଣ୍ଟା ପାଇଲେ ବଡ଼ ଆନନ୍ଦରେ କଳଦାନ୍ତରେ ତାହାକୁ ଚୋବାଏ । ବିରାଡ଼ି ମାଛ ମାଂସ ଖାଏ ବୋଲି ତାହା ଦେହରେ ଆଇଁଷଗନ୍ଧ ଅଛି ।

ବିରାଡ଼ି ଆମ୍ଭମାନଙ୍କର ଉପକାରୀ । ସେ ମୂଷାମାନଙ୍କୁ ଧରି ଖାଇବାରୁ, ମୂଷାଦ୍ୱାରା ଆମ୍ଭମାନଙ୍କର ଅଧିକ ଅନିଷ୍ଟ ହୋଇପାରେ ନାହିଁ । ବିରାଡ଼ିର ନଖକୁ ସାପ ଡରେ । ଶିକାରୀ ବିରାଡ଼ି ଅନେକ ବେଳଯାଏ ସାପକୁ ଅଟକାଇଦିଏ । କୌଣସି କୌଣସି ବିରାଡ଼ି ସାପକୁ କାମୋଡ଼ି ଘେନି-ଆସନ୍ତି । କୌଣସି କୌଣସି ବିରାଡ଼ିର ସ୍ୱଭାବ ଏତେ ଭଲ ଯେ, ଦୁଧ ବା ମାଛ ତାହା ଆଗରେ ଥୁଆ ହୋଇଥିଲେ ମଧ୍ୟ, ତାକୁ ଖାଇବାକୁ ନ ଦେବାଯାଏ ସେଥିରେ ସେ ମୁହଁ ମାରେ ନାହିଁ । ବିରାଡ଼ି ଦେହ ଆଉଁ-ସିଲେ ସେ ଗୁଡୁର ଗୁଡୁର୍ ଶବ୍ଦ କରେ । ତାହାର ଚାରି ଗୋଡ଼ ଉପରକୁ ଧରି ଛାଡ଼ିଦେଲେ, ତଳେ ପଡ଼ିଲା ବେଳକୁ ତାହା ଗୋଡ଼ମାନ ତଳକୁ ହୋଇଯାଇଥାଏ । ଆଉ କୌଣସି ପ୍ରାଣୀଠାରେ ଏହା ଦେଖା-ଯାଏ ନାହିଁ । ବିରାଡ଼ିମାନଙ୍କର ଥରକେ ଦୁଇ ବା ତହିଁରୁ ଅଧିକ ଛୁଆ ଜନ୍ମନ୍ତି ।

## ସାଧୁ ଓ ବାଧୁ ।

ବାଧୁ ।—ସାଧୁ ! ଆଜି ପଢ଼ିବାକୁ ଯିବୁ ନାହିଁକି ?

ସାଧୁ ।—କାଲି ସବ୍‌ଇନ୍‌ସ୍ପେକ୍ଟର ବାବୁ ପରୀକ୍ଷା କରିବାପାଇଁ ଆସି-ଥିଲେ । ଆଜି ଦିନକ ଆମ୍ଭମାନଙ୍କୁ ଛୁଟି ଦେଇଛନ୍ତି । ତୁ କାଲି ଗଲୁ ନାହିଁ କାହିଁକି ?

ଗଧୁ ।—କାଲି ବାପା ଘରେ ନ ଥିଲେ । ମୋର ପଢ଼ିବାପାଇଁ ମନ ହେଲା ନାହିଁ । ମୁଁ ମାଙ୍କୁ କହି ରହିଗଲି । ଆଜି ତ ଛୁଟି ଅଛି, ଚାଲ ଖେଳିବା ।

ସାଧୁ । କାଲିକ ଯେଉଁ ପଢ଼ା ଅଛି ତାହା କରି ସାରେଁ, ଖେଳିବା ।

ଗଧୁ । ଉପରଓଳି ପଢ଼ା କରିବୁ, ଆ ଏହିକ୍ଷଣି ଖେଳିବା । ଖରା ଚଢ଼ିଲେ ଖେଳିବାକୁ ସୁଖ ଲାଗିବ ନାହିଁ । ସେଠାରେ ବହି ଥୋଇ-ଦେଇ ଆ ।

ସାଧୁ । ପଢ଼ା କରି ନ ସାରି ଖେଳନ୍ତି ନାହିଁ । ବାପା କହନ୍ତି, ଅବଧାନେ ମଧ୍ୟ କେତେଥର କହିଲେଣି, ପଢ଼ାଟି କରି ଭଲ ସ୍ଥାନରେ ବହି ରଖିଦେଇ, ଖେଳିବାକୁ ଯିବ । ଆଗ କାମ ଆଗେ କରିବା ଉଚିତ ।

ଗଧୁ ।—ପଢ଼ିବାପାଇଁ ବହୁତ ସମୟ ଅଛି । ଉପରଓଳି ନ ପଢ଼ିଲେ ସଞ୍ଜରେ ପଢ଼ା ହୋଇ ପାରିବ । ଆ, ଖେଳିବା ।

ସାଧୁ ।—ପଢ଼ାଟି ନ କରି ମୁଁ ଖେଳେଁ ନାହିଁ । ପଢ଼ା ପଛକୁ ରଖି ଖେଳିଲେ ମୋତେ ଅଡୁଆ ଲାଗିବ । ପୁଣି ଅବଧାନେ ଓ ବାପା ଏପରି କରିବାକୁ ମନା କରିଅଛନ୍ତି ।

ଗଧୁ ।—ପଢ଼ା ନ କଲେ ସିନା ଦୋଷ ହେବ । ଆ, ଏହିକ୍ଷଣି ଖେଳିବା । ପଛେ ପଢ଼ିବା ।

ସାଧୁ । ମୋତେ ସେପରି କହ ନା । ପଢ଼ା ନ ସାରିଲେ ମୋ ମନ ଆଉ କାହିଁରେ ଲାଗିବ ନାହିଁ । ମୁଁ ଯାଉଛି ।

## କାର୍ଯ୍ୟ ଓ ଖେଳ ।

ବାଳକ ବାଳିକା—ମାନେ ଆହେ ଶୁଣ
ଖେଳିବା ବେଳରେ ଖେଳ,
ନ ଖେଳ ନ ବୁଲ ଆଳସ୍ୟେ ଯେ ବସେ
ଛାଡ଼ିଦିଅ ତାହା ମେଳ ।

ଖେଳିବା ବେଳରେ ଖେଳୁଥାଅ, କିନ୍ତୁ
କାର୍ଯ୍ୟବେଳେ କାର୍ଯ୍ୟ କର,
କାର୍ଯ୍ୟ ଯେ ନ କରି କେବଳ ଖେଳଇ
ସଙ୍ଗ ଛାଡ଼ିଦିଅ ତାର ।

କାର୍ଯ୍ୟବେଳେ କାର୍ଯ୍ୟ ଖେଳବେଳେ ଖେଳ
ଏ ନୀତିରୁ ଯେ ନ ଟଳେ,
ସକଳେ ତାହାଙ୍କୁ ଆଦର କରନ୍ତି,
ସୁଖ ମିଳେ ବଳେ ବଳେ ।



## କୁକ୍କୁର ।

କୁକ୍କୁର ଦେହ ପ୍ରାୟ ବାଘର ଦେହପରି । ବାଘର ଗୋଡ଼ରେ ନଖ ଅଛି, କୁକ୍କୁର ଗୋଡ଼ରେ ମଧ୍ୟ ନଖ ଅଛି । ମାତ୍ର ବାଘର ନଖ ଯେପରି

ମାଂସ ମଧ୍ୟରେ ପଶିଥାଏ, ସେ ରାଗି ଗୋଡ଼ ମାରିଲେ ନଖ ବାହାରି ଆସେ, କୁକ୍କୁର ନଖ ସେପରି ନୁହେଁ, ସବୁବେଳେ ବାହାରିଥାଏ। ବିରାଡ଼ି ମାନଙ୍କର ମୁଣ୍ଡ ପ୍ରାୟ ଗୋଲ। ମାତ୍ର କୁକ୍କୁରମାନଙ୍କ ମଧ୍ୟରୁ କାହାରି କାହାରି ମୁଣ୍ଡ ପ୍ରାୟ ଗୋଲ, କାହାରି କାହାରି ମୁଣ୍ଡ ଲମ୍ବ। ଏ ଦେଶରେ ବିରାଡ଼ି ଦେହର ଲୋମଠାରୁ କୁକ୍କୁର ଦେହର ଲୋମ ସାନ। ଯେଉଁ ଦେଶରେ ବହୁ ଶୀତ, ସେଠାରେ କୁକ୍କୁରମାନଙ୍କର ଲୋମ ବଡ଼ ବଡ଼ ହୁଏ।

ନାନା ଜାତି କୁକ୍କୁର ଅଛନ୍ତି। କୌଣସି କୌଣସି ଜାତି ବିରାଡ଼ି ପରି ସାନ। କୌଣସି କୌଣସି ଜାତି କୁକ୍କୁର ବାଘୁଣିପରି ବା ତାହାଠାରୁ ବଡ଼, କେହି କେହି ଦେଖିବାକୁ ଶିଆଳପରି। ଯେଉଁ ଦେଶରେ ଅଧିକ ଶୀତ, ସେ ଦେଶରେ ଯେତେ ଜାତି କୁକ୍କୁର ଅଛନ୍ତି, ଅମ୍ଭମାନଙ୍କ ଦେଶରେ ତେତେ ଜାତି କୁକ୍କୁର ନାହାନ୍ତି। ଯେଉଁ କୁକ୍କୁରମାନଙ୍କର ଗୋଡ଼ ସରୁ ଓ ଲମ୍ବ, ସେମାନେ ଅତି ଶୀଘ୍ର ଦୌଡ଼ି ପାରନ୍ତି।

ବିରାଡ଼ିପରି କୁକ୍କୁର ଭାତ, ଦୁଧ, ମାଂସ ଓ ମାଛ ଖାଏ। ବିରାଡ଼ିପରି କୁକ୍କୁର ଜିଭରେ ଚୁକୁଳି ଚୁକୁଳି ପାଣି ଓ ଦୁଧ ପିଏ। ଗଣ୍ଠିକା ହାଡ଼ ପାଇଲେ କୁକ୍କୁର ଅତି ଆନନ୍ଦରେ ତାହା ଚୋବାଏ। ମାଂସ କୁକ୍କୁର-ଦେହକୁ ବଡ଼ ଉପକାରୀ, ମାତ୍ର ମାଛ ସେପରି ନୁହେ।

ବିରାଡ଼ିପରି କୁକ୍କୁର ମଧ୍ୟ ଶିକାରୀ ଜୀବ। ମାକଡ଼, ଶିଆଳ, ଠେକୁଆ ଓ ମୂଷାକୁ କୁକ୍କୁର ଗୋଡ଼ାଏ। ମାକଡ଼ମାନେ କୁକ୍କୁରକୁ ବଡ଼ ଡରନ୍ତି। କୋକିଶିଆଳ ସହଜେ ଧରାଦିଏ ନାହିଁ। କୁକ୍କୁର ତାହା ନିକଟରେ ପହଞ୍ଚିଲେ, ସେ ସିଧା ବାଟ ଛାଡ଼ି, ବାଙ୍କ ବୁଲି ପଳାଇ ଯାଏ। ଏହିପରି ସେ କୁକ୍କୁରକୁ ହଇରାଣ କରେ।

କୁକ୍କୁର ବଡ଼ ଉପକାରୀ ଅଟେ । କୁକ୍କୁର ଥିଲେ ମାଙ୍କଡ଼ର ଭୟ ଥାଏ ନାହିଁ । କୁକ୍କୁରର ନିଦ ଅତି ପତଳା । ଚୋର ଆସିଲେ ସେ ବଡ଼ ପାଟି କରି ଭୁକିଲେ ଲୋକେ ସାବଧାନ ହୋଇ ରହନ୍ତି । କୌଣସି କୌଣସି କୁକ୍କୁର ଆପଣାର ପ୍ରାଣ ଦେଇ ପୋଷିଲା ଲୋକର ଉପକାର କରିଅଛି ।

## ଟିପୁ ।

କୌଣସି ସହରରେ ଜଣେ ବାବୁଙ୍କର ଗୋଟିଏ ଧଳା କୁକ୍କୁର ଥିଲା । ସେ ତାହାର ନାମ ଦେଇଥିଲେ ଟିପୁ । ଟିପୁକୁ ସେ ବଡ଼ ସ୍ନେହ କରୁଥିଲେ ଓ ବଡ଼ ଯତ୍ନରେ ଖୁଆଉଥିଲେ । ତାଙ୍କର ପୁଅ ମୋହନମୋହନ ତେତେବେଳେ ପିଲା । ମୋହନମୋହନ ଦିନେ ପକା ପିଣ୍ଢିରେ ଯାଇ ଗୋଟିଏ ଉଚ୍ଚ ସ୍ଥାନରେ ବସିଥିଲା । ଏହି ସମୟରେ ଗୋଟାଏ ଗୋଖୁର ସାପ ସେହି ପିଣ୍ଢିରେ ଉଠିଲା । ସେହି ବାବୁ ଓ ଅନ୍ୟ ଲୋକେ ତାହା ଦେଖିଲେ, ମାତ୍ର କଅଣ କରିବେ ବୁଦ୍ଧି ଦିଶିଲା ନାହିଁ । ସାପକୁ ହୁରୁଡ଼ାଇଲେ ସେ ପିଲା ଆଡ଼କୁ ଶୀଘ୍ର ଚାଲିଯିବ । ଟିପୁ କେଉଁଠାରେ ଥିଲା, ଅନେକ ଲୋକ ରୁଣ୍ଡ ହେବାର ଦେଖି ସେଠାରେ ପହଞ୍ଚିଗଲା । ଲୋକମାନଙ୍କ ମୁହଁକୁ ଚାହିଁ ଦେଖିଲା ସମସ୍ତେ ସାପଆଡ଼କୁ ଅନାଇଅଛନ୍ତି । ସେ ବିଲମ୍ବ ନ କରି ଡେଇଁପଡ଼ି ସାପ ଅଗକୁ ଯାଇ ତାହାକୁ ଅଟକାଇଲା । ଏହି ସମୟରେ ସେମାନେ ବାଡ଼ିରେ ସାପକୁ ମାରି ପିଲାକୁ ଓଠାଇ ଆଣିଲେ । ଏହିପରି ଟିପୁ ମୋହନମୋହନର ପ୍ରାଣ ବଞ୍ଚାଇଲା । ବାବୁଟି ଆନନ୍ଦରେ ଟିପୁକୁ କୁଣ୍ଢାଇ ପକାଇଲେ ।

## ବଣି ।

ବାଡ଼ିରେ ଓ ଦାଣ୍ଡରେ ବଣି ଚଢ଼ାଇ ବୁଲୁଥାଏ, ଦେଖିଥିବ । ମାଟିଆ ରଙ୍ଗରେ ଖଇର ରଙ୍ଗ ମିଶାଇଲେ ଯେପରି ହେବ, ବଣିର ପିଠିର

ଉଗ ସେହିପରି ଦଣେ । ତାହା ଥଣ୍ଟରେ ଟିକଏ ହଳଦିଆ ରଙ୍ଗ ଥାଏ । ତାହାର ଦୁଇଟି ଗୋଡ଼ ଓ ଦୁଇଟି ଡେଣା ଥାଏ । ଡେଣାକୁ ପକ୍ଷ କହନ୍ତି । ଚଢ଼ାଇମାନଙ୍କର ପକ୍ଷ ଅଛି ବୋଲି ସେମାନଙ୍କୁ ପକ୍ଷୀ କହନ୍ତି । ପକ୍ଷୀମାନେ ଡେଣା ମେଲାଇ ତାହା ହଲାଇ ହଲାଇ ଉଡ଼ନ୍ତି । ବଣି ଉଡ଼ିପାରେ ମଧ୍ୟ ଗୋଡ଼ରେ ଅଳ୍ପ ଅଳ୍ପ ଚାଲିପାରେ ।

ବଣି ପୋଷିଲେ ଅତି ଅଳ୍ପ ଦିନରେ ପୋଷ ମାନେ । ବଣି ଛୁଆକୁ ଛଅ ସାତ ଦିନ ପିଞ୍ଜରାରେ ରଖି ଛାଡ଼ିଦେଲେ, ସେ ଚରି ବୁଲି ଅପେ ଫେରି ଅସେ । ଚାଉଳ ସିଝାଇ ବା ବଉଳାଇ ବଣିକୁ ଦେଲେ ସେ ଖାଏ, ଦୁଧ ଦେଲେ ପିଏ, ମଧ୍ୟ ଝିଣ୍ଟିକା ପ୍ରଭୃତି ପୋକ ଖାଏ । ପୋଷାବଣିକୁ ଶିଖା-ଇଲେ ସେ କେତେଗୁଡ଼ିଏ କଥା କହିପାରେ । ବଣି ପୋଷିଲେ, ତାହାର ଖାଇବାବେଳ ହେଲେ ତାକୁ ଖାଇବାକୁ ଦେବ । ପିଞ୍ଜରା ମଧ୍ୟରେ ଗୋଟିଏ ଗଣ୍ଡାରେ ପିଇବା ପାଇଁ ପାଣି ରଖିଦେବ । ତୁମ୍ଭମାନଙ୍କର ଖାଇବାବେଳ ଗଡ଼ିଗଲେ ତୁମ୍ଭମାନଙ୍କୁ ଯେପରି ଭୋକ ବାଧେ, ବଣିର ଖାଇବାବେଳ ଗଡ଼ିଗଲେ ତାକୁ ମଧ୍ୟ ସେହିପରି ବାଧେ ।

## ନିଉଟନ୍ ।

ସାହେବମାନଙ୍କ ଦେଶରେ ଆଇଜାକ୍ ନିଉଟନ୍ ନାମରେ ଜଣେ ଲୋକ ଥିଲେ । ସେ ବହୁତ ପାଠ ପଢ଼ିଥିଲେ । ତାଙ୍କପରି ପଣ୍ଡିତ ଲୋକ ପ୍ରାୟ ଦେଖାଯାନ୍ତି ନାହିଁ । ସେ ଏଡ଼େ ପଣ୍ଡିତ ଥିଲେ ସୁଦ୍ଧା, ଅଦୌ ଗର୍ବ କରୁ ନ ଥିଲେ । ସେ ଅତି ଅଳ୍ପ ବିଦ୍ୟା ଜାଣନ୍ତି ବୋଲି ମନେ କରୁଥିଲେ ।

ଗରିବ ବା ମୂର୍ଖ ଲୋକଙ୍କୁ ସେ ଘୃଣା କରୁ ନ ଥିଲେ । ବଡ଼ ସାନ ସମସ୍ତଙ୍କୁ ସେ ସମାନ ମନେ କରୁଥିଲେ । କେହି ତାଙ୍କଠାକୁ ଗଲେ, ସେ

ତାକୁ ଆଦର କରି ଏପରି କଥା କହୁଥିଲେ ଯେ ସେ ଆନନ୍ଦିତ ହେଉ-ଥିଲା । ଏଥିପାଇଁ ଲୋକେ ତାଙ୍କୁ ଭଲ ପାଉଥିଲେ ।

ନିଉଟନ୍ କେବେହେଁ କାହାରି ଉପରେ ରାଗୁ ନ ଥିଲେ । ତାଙ୍କର ଗୋଟିଏ ସାନ କୁକ୍କୁର ଥିଲା । ଦିନେ ରାତିରେ ଆପଣା ପଢ଼ାଘରେ ବତି ଜାଳି ପଢ଼ୁଁ ପଢ଼ୁଁ ସେ କୌଣସି କାର୍ଯ୍ୟରେ ବାହାରକୁ ଆସିଲେ । ଏହି ସମୟରେ କୁକ୍କୁରଟି ସେହି ଘରେ ପଶିଯିବାରୁ, ତାହାର ଗୋଡ଼ ବାଜି ବତି ପଡ଼ିଗଲା । ନିଉଟନ୍ ଅନେକ ବର୍ଷ ଲାଗି କାଗଜରେ ଯାହା ଯାହା ଲେଖି ରଖିଥିଲେ, ସେସବୁ ପୋଡ଼ିଗଲା । ନିଉଟନ୍ ଘର ଭିତରକୁ ଆସି ଯେତେବେଳେ ଏହା ଦେଖିଲେ, ସେତେବେଳେ ତାଙ୍କ ମନରେ ଅବଶ୍ୟ କଷ୍ଟ ହୋଇଥିବ । ମାତ୍ର ସେ କୁକ୍କୁର ଉପରେ ନ ରାଗି କେବଳ ଏତିକି କହିଲେ, "ତୁ ମୋହର କେତେ ଅନିଷ୍ଟ କଲୁ, ତାହା ତୁ ଅଦୌ ଜାଣି ପାରୁ ନାହିଁ ।"

ଯେଉଁମାନେ ନିଉଟନଙ୍କ ପରି ବଡ଼ ପଣ୍ଡିତ ହୁଅନ୍ତି, ସେମାନଙ୍କ ମନରେ ଗର୍ବ, ଘୃଣା ବା ରାଗ ରହି ପାରେ ନାହିଁ ।

## ସାରି ।

ସାରି ମଧ୍ୟ ଗୋଟିଏ ପକ୍ଷୀ । ଏହା ବଣିଠାରୁ କିଛି ବଡ଼ । ସାରି କଳା ଦିଶେ । ପୋଷିଲେ ତାହା ପୋଷ ମାନେ, ମାତ୍ର ବଣି ଯେତେ ଶୀଘ୍ର ପୋଷ ମାନେ, ସାରି ସେତେ ଶୀଘ୍ର ପୋଷ ମାନେ ନାହିଁ । ଶିଖାଇଲେ ସାରି ମନୁଷ୍ୟପରି କଥା କହିପାରେ, ମାତ୍ର କଥାଗୁଡ଼ିକ ନାକରେ କହିଲାପରି ଶୁଭେ । ଭୋକ ହେଲେ ସେ ଖାଇବାକୁ ମାଗେ । ସକାଳ ହେଲେ ପିଲାଙ୍କ ନାମ ଧରି ନିଦରୁ ଉଠିବାପାଇଁ ସେମାନଙ୍କୁ ଡାକେ । ସାରିର ବୁଦ୍ଧି ଅଛି । ଯାହାଙ୍କ ଘରେ ସାରି ଥିବ, ତୁମ୍ଭେ

ବାହାରେ ଥାଇ ତାହାଙ୍କ ଘରର କୌଣସି ଲୋକଙ୍କୁ ଡାକିଲେ, ସେ ଲୋକଟି ଯଦି ଘରେ ନ ଥାଏ, ସାରୁ କହିବ, "ନାହିଁ" । କୌଣସି କୌଣସି ସାରୁ ଶ୍ଳୋକ ଶିଖିଥାନ୍ତି । ସାରୁ ଶ୍ଳୋକ ବୋଲିଲେ, ଶୁଣିବାକୁ ବଡ଼ କୌତୁକ ହୁଏ ।

ସାରୁ ଭାତ ଖାଏ, ଚାଉଳ ବତୁରାଇ ଦେଲେ ତାହା ଖାଏ, ପାଚିଲା ଫଳ ଖାଏ, ଦୁଧ ପିଏ । ସାରୁ ପୋଷିଲେ ତାକୁ ପ୍ରତିଦିନ ଭଲ ଦୁଧ ଦେବାକୁ ହେବ । ସାରୁ ବଡ଼ ସୁକୁମାର ଜୀବ । ତାକୁ ପୋଷିଲେ ସବୁବେଳେ ତାହା ପ୍ରତି ଯତ୍ନ କରିବ ।

ପାହାଡ଼ ଓ ଜଙ୍ଗଲରେ ସାରୁ ଜନ୍ମନ୍ତି । ଜଙ୍ଗଲରେ ଯେଉଁଠାରେ ଭଲ ଭଲ ଫଳ ପାଚେ ସେହିଠାରେ ବହୁତ ସାରୁ ଥାନ୍ତି । ସେଠାରୁ ଧରିଆଣି ଲୋକେ ସେମାନଙ୍କୁ ପୋଷନ୍ତି ।

## ବାଳକ ଓ ପକ୍ଷୀ ।

ବାଳକ

ଏହା କି ସୁନ୍ଦର ଅଟୁ ଅରେ ପକ୍ଷୀ
କେଉଁ ଆଡ଼େ ଯିବୁ କହ,
ତୋତେ ଦେଖି ମନେ ଶରଧା ହେଉଛି,
କ ଯା ନ ଯା ତୁହି ରହ ।

ପକ୍ଷୀ

ଏ ଗଛରୁ ସେ ଗଛରେ ଡାଳେ ଡାଳେ ବୁଲେଁ,
ବୁଲେଁ ମୁହିଁ ବନେ ବନେ,
ପଦାରେ ବୁଦାରେ ବନେ ନଈକୂଳେ
ବୁଲେଁ ଅନନ୍ଦିତ ମନେ ।



ବାଳକ

ବୁଲି ବୁଲି ପାଦ ଥକିଯିବ ତୋର
ଏ କଷଣ କିପାଁ ସହୁ ?
ମୁଁ ଅଛି ଯେପରି, ଥପି ଧରି କିପାଁ
ଠାଏକରେ ତୁ ନ ରହୁ ?

ପକ୍ଷୀ

ଈଶ୍ୱର ଚାଲିବା— ପାଇଁ ପାଦ ଦେଲେ,
ଡେଣା ଦେଲେ ଉଡ଼ିବାକୁ,

ଚରେଁ ବୁଲେଁ ଉଡ଼େଁ   ଯେବେ ଯାହା ଇଚ୍ଛା,
ଥକା କହନ୍ତ କାହାକୁ ?

ବାଳକ

ରଖିଅଛୁଁ ସୁନା—   ପିଞ୍ଜରାଟିଏ ରେ
ଆନନ୍ଦରେ ରହ ତହିଁ ।
ଏଥୁଁ ଭଲ ସ୍ଥାନ   ପାଇବୁ କାହିଁ ରେ
ଯେତେ ବୁଲୁଥାଅ ଯହିଁ ।

ପକ୍ଷୀ

ଦେଖିବାକୁ ଭଲ   ସୁନା ପିଞ୍ଜରା ରେ
ରହିବାକୁ ନୁହେ ଭଲ,
ଗଛରେ ଯେ ବସା,   ତହିଁ ବଡ଼ ସୁଖ,
ପିଞ୍ଜରାରେ କଲବଲ ।

ବାଳକ

ଖାଇବାକୁ ଦେବ   ଦୁଧ ଭାତ ନିତ
ପିଇବାକୁ ଦେବ ଜଳ,
ପାଚିଲା କଦଳୀ   ଅମ୍ବ ଡାଳିମ୍ବ ରେ
ଯେ ଋତୁରେ ଯେଉଁ ଫଳ ।

ପକ୍ଷୀ

ଲୋଡ଼ା ନାହିଁ ମୋର   ଦୁଧ ଅବା ଭାତ,
ଝରଣାରେ ଅଛୁ ଜଳ
ବାଡ଼ି ବଗିଚ୍ଚାରେ   ମିଳଇ କି ଡେତେ
ବନେ ମିଳେ ଯେତେ ଫଳ ?

## ବାଳକ

ସୁକୁମାର ଅଟୁ ଅରେ ପକ୍ଷୀ, ତୋତେ
ବାଧିବ ଝଡ଼ ବରଷା,
ଘୋର ଜାଡ଼ ଯେବେ ମାଡ଼ି ଆସିବ ରେ
ଭଲ ଲାଗିବ କି ବସା ?
ବନରେ ବୁଲବୁ ଏଣେ ତେଣେ ସିନା,
ବସାରେ ଅଲୁଅ କାହିଁ?
ମେଘ ଅନ୍ଧାରରେ ହଇରାଣ ହେବୁ
ବାଟ ତ ଦଶିବ ନାହିଁ ।

## ପକ୍ଷୀ

ଝଡ଼ ବରଷାକୁ ଡର ନାହିଁ ମୋର
ଉଡ଼ି ବୁଲେଁ ମୁହିଁ ଜାଡ଼େ ।
ସହି ଗଲେ, ହୁଏ ଦେହେ ମନେ ବଳ ;
ନ ସହିଲେ ଡର ମାଡ଼େ ।
କେତେ ଭାବୁଛୁ ରେ ମୋ ପାଇଁ ବାଳକ !
ମୁଁ ନ ଭାବେଁ ମୋହ ପାଇଁ ।
ଜାଣ, ତୋତେ ସୁଖେ ରଖିଅଛନ୍ତି ଯେ
ମୋତେ ସେ ଜଗତ-ସାଇଁ ।
ଅନ ପାଇଁ ତୁହି ଏତେ ଭାବୁ, ଦେଖି
ହେଲି ଆନନ୍ଦିତ ଅତି ।
ଦୟାର ଭଣ୍ଡାର ପରମ ଈଶ୍ୱର
ରଖନ୍ତୁ ଏ ତୋର ମତି ।

# ବାବର ଓ ହୁମାୟୁନ ।

ମୁସଲମାନମାନଙ୍କ ମଧ୍ୟରେ ମୋଗଲ ବୋଲି ଗୋଟିଏ ଜାତି ଅଛି । ମୋଗଲମାନେ ଅନ୍ୟ ଦେଶରୁ ଆସି ଏ ଦେଶରେ ରଜା ହେଲେ, ଏବଂ ଘର କରି ରହିଗଲେ ।

ଓଡ଼ିଶାର ଉତ୍ତର-ପଶ୍ଚିମରେ ବହୁ ଦୂରରେ ଦିଲ୍ଲୀ ନାମରେ ଗୋଟିଏ ନଗର ଅଛି । ସେ ନଗର କଟକଠାରୁ ବଡ଼ । ବାବର ନାମରେ ଜଣେ ମୋଗଲ ଲଢ଼ାଇରେ ଜିଣି ସେହି ଦିଲ୍ଲୀ ନଗରରେ ରହିଲେ । ସେ ଅନେକଗୁଡ଼ିଏ ରଜାଙ୍କୁ ଜିଣି ସେମାନଙ୍କ ଉପରେ ବଡ଼ ରଜା ହୋଇଥିଲେ । ଏହିପରି ବଡ଼ ରଜାଙ୍କୁ ସମ୍ରାଟ୍ କହନ୍ତି । ମୁସଲମାନମାନେ ବାବରଙ୍କୁ ବାଦ୍‌ସାହା କହୁଥିଲେ ।

ବାବରଙ୍କ ପୁଅର ନାମ ହୁମାୟୁନ । ଏକ ସମୟରେ ହୁମାୟୁନଙ୍କୁ ରୋଗ ହେଲା । ଯେତେ ଉପାୟ କଲେହେଁ, ସେ ରୋଗ ଭଲ ହେଲା ନାହିଁ । ସେତେବେଳକୁ ବାବରଙ୍କୁ ବହୁତ ବୟସ ହେଲାଣି । ସେ ହୁମାୟୁନଙ୍କୁ ବଡ଼ ସ୍ନେହ କରୁଥିଲେ । ପୁଅର ରୋଗ ଭଲ ହେଲା ନାହିଁ ଦେଖି ସେ ବଡ଼ କାତର ହେଲେ । ବହୁତ ଭାବି ଭାବି ସେ ଦିନେ ହୁମାୟୁନଙ୍କ ଶେଯ ଚାରିପାଖେ ତିନିଥର ବୁଲି ଈଶ୍ୱରଙ୍କୁ ଡାକି କହିଲେ, "ହେ ଈଶ୍ୱର ! ହୁମାୟୁନକୁ ଭଲ କରିଦିଅ, ତାହାର ରୋଗ ମୋତେ ଦିଅ ।"

ଏହାପରଠାରୁ ହୁମାୟୁନ ଅଳ୍ପେ ଅଳ୍ପେ ଭଲ ହେଲେ । ଏଣେ ବାବରଙ୍କୁ ରୋଗ ହେଲା । ହୁମାୟୁନ ଯେତିକି ଭଲ ହେଉଥାନ୍ତି ବାବରଙ୍କ ରୋଗ ସେତିକି ବଢ଼ୁଥାଏ । ଶେଷରେ ସେହି ରୋଗରେ ବାବର ମଲେ ।

ଯେ ମନ ଲଗାଇ ଈଶ୍ୱରଙ୍କୁ ଡାକେ, ଈଶ୍ୱର ତାହାର ଡାକ ଶୁଣନ୍ତି ।

## ଶସ୍ୟ ।

ଧାନ ଗଛର ଫଳ ପାଚିଲେ ଗଛଟି ମରିଯାଏ । ସେହିପରି ଗହମ, ମୁଗ, କୋଳଥର ଫଳ ପାଚିଲେ ଗଛ ମରିଯାଏ । ଏସବୁକୁ ଶସ୍ୟ କହନ୍ତି । ଧାନ, ମୁଗ, ଗହମ, ଯଅ ପ୍ରଭୃତି ଶସ୍ୟ ଆମ୍ଭେମାନେ ଖାଉଁ । ସୋରିଷ, ରାଶି ଓ ଆଉ କେତେଗୋଟି ଶସ୍ୟ ପେଡ଼ିଲେ ସେଥିରୁ ତେଲ ବାହାରେ । ସବୁ ତେଲ ଦୀପରେ ଜଳାଯାଇପାରେ । କେତେଗୁଡ଼ିଏ ତେଲ ଆମ୍ଭେମାନେ ଦେହରେ ଲଗାଉଁ, କେତେଗୁଡ଼ିଏ ତେଲ ତରକାରିରେ ଖାଉଁ ।

ଗୋରୁ, ଘୋଡ଼ା, ହାତୀ ଶସ୍ୟ ଖାନ୍ତି । ଅନ୍ୟ ପଶୁମାନେ ମଧ୍ୟ ଶସ୍ୟ ଖାନ୍ତି । ଅନେକ ପକ୍ଷୀ ଶସ୍ୟ ଖାନ୍ତି ।

ଯେ ଯାହା ଖାଏ, ତାହାକୁ ତାହାର ଖାଦ୍ୟ କହନ୍ତି । ଆମ୍ଭମାନଙ୍କର ଅନେକ ପ୍ରକାର ଖାଦ୍ୟ ଅଛି । ଦୁଧ ଘିଅ, ମାଛ ମାଂସ, କେତେ ପ୍ରକାର କଞ୍ଚା ପାଚିଲା ଫଳ ଆମ୍ଭେମାନେ ଖାଇଲେହେଁ ଶସ୍ୟ ଆମ୍ଭମାନଙ୍କର ପ୍ରଧାନ ଖାଦ୍ୟ । ଏ ଦେଶରେ ଧାନ ବହୁତ ଜନ୍ମେ । ଏଣୁ ଧାନ ଏ ଦେଶର ପ୍ରଧାନ ଖାଦ୍ୟ । ପଶ୍ଚିମାମାନଙ୍କ ଦେଶରେ ଧାନ ଅଳ୍ପ ହୁଏ, ଗହମ ଅଧିକ ଜନ୍ମେ । ଗହମ ସେମାନଙ୍କର ପ୍ରଧାନ ଖାଦ୍ୟ । ଯେଉଁ ଦେଶରେ ଧାନ ଗହମ ନାହିଁ, ଯଅ ଅଛି, ସେ ଦେଶରେ ଯଅ ପ୍ରଧାନ ଖାଦ୍ୟ । ଯେଉଁ ଦେଶରେ କୌଣସି ଶସ୍ୟ ଜନ୍ମେ ନାହିଁ, ସେ ଦେଶରେ ମନୁଷ୍ୟମାନେ ରହି ତିଷ୍ଠି ପାରିବେ ନାହିଁ ।

## ହଂସ ।

ହଂସ ମଧ୍ୟ ଏକପ୍ରକାର ପକ୍ଷୀ । ଏହା ବଣି ଓ ସାରୁଠାରୁ ବହୁତ ବଡ଼ । ଏହାର ଗୋଡ଼ ଓ ଡେଣା ଅଛି । ମାଏ ଏହା ପ୍ରାୟ ଉଡ଼େ ନାହିଁ । ଏହା ଗୋଡ଼ରେ ଧୀରେ ଧୀରେ ଚାଲେ, ଏବଂ ପାଣିରେ ପହଁରେ । ଦୁଇ ଜାତି ହଂସ ଅଛନ୍ତି । ଗୋଟିଏ ଜାତି ବଡ଼ ଏବଂ ଧଳା । ଆଉ ଗୋଟିଏ ଜାତି ସାନ, ଏହାର ବର୍ଣ୍ଣ ମାଟିଅ ଓ କଳା ମିଶା । ଉଭୟ ଜାତି ବହୁତ ବେଳଯାଏ ପାଣିରେ ପଡ଼ି ପହଁରନ୍ତି ।

ହଂସ ପୋଷିଲେ ତାହା ଖାଇବା ପାଇଁ ବହୁତ ଭାବିବାକୁ ହୁଏ ନାହିଁ । ପାଣିରେ ପଡ଼ି ସେ ଗେଣ୍ଡା ଯଉ ଖାଏ । ହଂସମାନେ ଧାନ, ଚାଉଳ, ଭାତ ଓ ଘାସ ମଧ୍ୟ ଖାନ୍ତି । ପାଚଲା ଧାନ କିଆରରେ ପଡ଼ିଲେ ଏମାନେ ବହୁତ ଧାନ ଖାଇଯାନ୍ତି ।

ଘାସବଣରେ ଏବଂ ନଡ଼ା ବା କୁଟାର ଗଦାରେ ହଂସମାନେ ଡିମ୍ବ ଦିଅନ୍ତି । ଡିମ୍ବ ଫୁଟିଲେ ସେଥିରୁ ଛୁଆ ବାହାରେ । ଧଳା ହଂସକୁ ରାଜ-ହଂସ କହନ୍ତି, ଏବଂ ଅନ୍ୟ ଜାତି ହଂସକୁ ଗେଡ଼ିହଂସ ବା ପାତିହଂସ କହନ୍ତି । ରାଜହଂସର ଡେଣାରେ ବଡ଼ ବଡ଼ ପର ପାକଲ ହେଲେ ସେଥିରୁ ପର କଲମ ହୁଏ ।

## କଲମ ।

ଲେଖିବାପାଇଁ କାଗଜ ଯେପରି ଆବଶ୍ୟକ ହୁଏ, କଲମ ମଧ୍ୟ ସେହିପରି ଆବଶ୍ୟକ ହୁଏ । ତିନିପ୍ରକାର କଲମ ଅଛି, କାଠିକଲମ, ପରକଲମ ଓ ଲୁହାକଲମ । ଶରପତ୍ର ଏକପ୍ରକାର ଗଛ ଅଛି । ସେ



ଗଛ ପାଚିଲ ହୋଇ ଶୁଖିଗଲେ, ଗଣ୍ଠିଠାରୁ ପବ ପବ କରି କାଟି ସେଥିରେ କଲମ କରନ୍ତି । ଆଉ ଏକପ୍ରକାର ଗଛ ଅଛି ତାହାର ରଙ୍ଗ ଖଇରି । ସେଥିରେ ମଧ୍ୟ କଲମ ତିଆରି କରନ୍ତି । କାଠିକଲମରେ ମୋଟ ଅକ୍ଷର ଲେଖାଯାଇପାରେ । ମାତ୍ର ସରୁ ଅକ୍ଷର ଲେଖା ସେଥିରେ ପ୍ରାୟ ଭଲ ହୁଏ ନାହିଁ । ପରକଲମ ଓ ଲୁହାକଲମରେ ସରୁ ଅକ୍ଷର ଭଲ ଲେଖାଯାଇପାରେ, ମଧ୍ୟ ମୋଟ ଅକ୍ଷର ଲେଖା ଯାଇପାରେ । ମୟୂର ଓ ହଂସର ପର ପାଚିଲ ହେଲେ, ତାହାକୁ କାଟି କଲମ ତିଆରି କରନ୍ତି । ହଂସପର ଅପେକ୍ଷା ମୟୂରପର ଅଧିକ ଟାଣ ହୁଏ । ମାତ୍ର ହଂସପର ଅଧିକ ଦିନ ଯାଏ । ଆମ୍ଭମାନଙ୍କ ଦେଶରେ ଯେଉଁ ଧଳା ହଂସ ଅଛନ୍ତି, ସେହିପରି ଏକ ଜାତି ହଂସ ଅନ୍ୟ ଦେଶରେ ଅଛନ୍ତି । ସେମାନଙ୍କ ପରରେ ଯେଉଁ କଲମ ହୁଏ ତାହା ବଡ଼ ଟାଣ । ସେହିପରି ଗୋଟିଏ କଲମରେ ଚାରି ମାସ ଲେଖାଯାଇପାରେ । କାଠି କଲମକୁ ଯେତେ ମାଡ଼ି ଲେଖାଯାଇପାରେ, ପରକଲମକୁ ତେତେ ମାଡ଼ି ଲେଖି ହେବ ନାହିଁ । ଲୁହାରେ ଯେଉଁ କଲମ ହୁଏ

ତାହା ପରକଲମଠାରୁ ଅଧିକ ଟାଣ । ମାତ୍ର ତାକୁ ଅଧିକ ମାଡ଼ି ଲେଖିଲେ କାଗଜ ଫାଟିଯାଏ, ଏବଂ ଅକ୍ଷର ଭଲ ହୁଏ ନାହିଁ । ଟିକିଏ ବସାଇ ଲେଖିଲେ ଲୁହାକଲମରେ ଭଲ ଲେଖାଯାଏ । ଆଜି-କାଲି ତମ୍ବା ଓ ରୂପାରେ ମଧ୍ୟ ଲୁହାକଲମପରି କଲମ ତିଆରି ହେଉ-ଅଛି । ତମ୍ବାକଲମ ଓ ରୂପାକଲମରେ ସହଜେ କଳଙ୍କ ନ ଧରିବାରୁ ସେ କଲମ ଲୁହାକଲମଠାରୁ ଅଧିକ ଦିନ ଯାଏ ।

କଲମରେ ଲେଖା ସରିଲେ ତାକୁ ଭଲ କରି ଧୋଇ ଓ ପୋଛି ଘରରେ ରଖିବ । ଖରାରେ ପକାଇଲେ ପରକଲମ ଓ କାଠିକଲମ ଫାଟି ଯାଏ ବା ମେଲା ହୋଇଯାଏ, ଲୁହାକଲମର ମଧ୍ୟ କ୍ଷତି ହୁଏ । କାଗଜ ବା ଚମଡ଼ାର ଖୋଳଟିଏ କରି ସେଥିରେ କଲମ ରଖିଲେ, କଲମରେ ଧୂଳି ଲାଗି ପାରେ ନାହିଁ, ତାହା ଅଧିକ ଦିନଯାଏ ଭଲ ରହେ ।

## ବ୍ରୁସ୍ ଓ ବୁଢ଼ିଆଣୀ ।

ଯେଉଁ ସାହେବମାନେ ଘରେ ଇଂରାଜୀରେ କଥା କହନ୍ତି, ସେମାନେ ଇଂରେଜ । ସେମାନଙ୍କ ଦେଶକୁ ଇଂଲଣ୍ଡ କହନ୍ତି । ଇଂଲଣ୍ଡର ଉତ୍ତରକୁ ଲାଗି ଆଉ ଗୋଟିଏ ଦେଶ ଅଛି । ଛଅଶ ବର୍ଷ ପୂର୍ବେ ସେ ଦେଶରେ ବ୍ରୁସ୍ ନାମରେ ଜଣେ ରାଜା ଥିଲେ । ଅନ୍ୟ ଦେଶରୁ ଶତ୍ରୁମାନେ ଆସି ତାହାଙ୍କଠାରୁ ରାଜ୍ୟ ଛଡ଼ାଇନେଲେ ।

ବ୍ରୁସ ଛଅଥର ଆପଣା ରାଜ୍ୟ ପାଇଁ ଲଢ଼ି ଛଅଥରଯାକ ହାରିଗଲେ । ଏଥିରେ ତାଙ୍କ ମନରେ ଆଉ ଆଶା ରହିଲା ନାହିଁ, ମାତ୍ର ସାହସ ତାଙ୍କୁ ଛାଡ଼ି ନ ଥାଏ । ଏକସମୟରେ ଦିନବେଳେ ସେ ଉପ-ରକୁ ମୁହଁ କରି ଗୋଟାଏ ଘରେ ପଡ଼ି, ମନେ ମନେ ନାନାପ୍ରକାର ଭାବୁଥିଲେ । ଘରଟା ପୁରୁଣା, ଛାତ କେଉଁଶସି କେଉଁଶସି ସ୍ଥାନରେ ମେଲା

ହୋଇଯାଇଥିଲା । ଖଣ୍ଡକୁ ଚାହିଁ ଚାହିଁ ସେ ଦେଖିଲେ ଯେ ଗୋଟାଏ ବୁଢ଼ିଆଣୀ ଗୋଟାଏ କାଠରୁ ଅନ୍ୟ କାଠକୁ ଡେଇଁ ସୂତା ନେବାପାଇଁ ଛଅଥର ଯତ୍ନ କରି ପ୍ରତିଥର ଖସିପଡ଼ିଲା । ମାତ୍ର ସାତଥର ବେଳକୁ ସେ ସେହି ଅନ୍ୟ କାଠରେ ପହଞ୍ଚି, ସେଥିରେ ସୂତା ଲଗାଇଲା ।

ଏହି ଘଟନା ଦେଖି ବ୍ରୁସ୍ ମନେ କଲେ, "କ୍ଷୁଦ୍ର ବୁଢ଼ିଆଣୀଟି ଯଦି ଏତେ ଥର ଯତ୍ନ କଲା, ମୁଁ ମନୁଷ୍ୟ, ମୁଁ ଆଉ ଥରେ ଯତ୍ନ କରିବି ।" ତାଙ୍କ ମନରେ ପୁଣି ଆଶା ତେଜିଉଠିଲା । ସେ ପୁଣି ଥରେ ଲଢ଼ିଲେ । ଏହିଥର ସେ ଶତ୍ରୁମାନଙ୍କୁ ଜିଣି, ଆପଣା ରାଜ୍ୟରୁ ସେମାନଙ୍କୁ ତଡ଼ିଦେଲେ ।

ଯତ୍ନ କଲେ ରତ୍ନ ମିଳେ ।

## ବାଘ ।

ବାଘ ଚତୁଷ୍ପଦ ଜୀବ । ଏହାର ଗୋଡ଼ର ଅଗୁଳିମାନଙ୍କରେ ବଡ଼ ବଡ଼ ଓ ବଙ୍କା ନଖ ଅଛି । ଏ ନଖଗୁଡ଼ାକ ବଡ଼ ଟାଣ । ବାଘର ମୁହଁ ବିରାଡ଼ି ମୁହଁ ପରି; ବିରାଡ଼ି ମୁହଁ ସାନ, ବାଘ ମୁହଁ ବଡ଼ । ବାଘକୁ ଅଣ ଦେଖିବାକୁ ଠିକ୍ ବିରାଡ଼ି ପରି । ବାଘ ଲାଙ୍ଗୁଡ଼ ବିରାଡ଼ି ଲାଙ୍ଗୁଡ଼ ପରି, ଏବଂ ମୁହଁରେ ବିରାଡ଼ି ଜାକ ପରି ଜାକ ଅଛି । ବାଘର ଦେହରେ ବହୁତ ବଳ ।

ଏ ଦେଶରେ ତିନି ଜାତି ବାଘ ଦେଖାଯାଏ । ହେଟାବାଘ ସବୁଠାରୁ ସାନ, ଏବଂ ଶିଆଳ ପରି ଦିଶେ, ଓ ଅସୁନ୍ଦର ଅଟେ । କଲରାପତରିଆ ତାହାଠାରୁ ବଡ଼ ଓ ଦେଖିବାକୁ ସୁନ୍ଦର । ଏହା ଦେହର ବଡ଼ ବଡ଼ କଳା ଚୋପା ଥାଏ । ଦେହର ଲୋମ କୋମଳ ଅଟେ । କୌଣସି କୌଣସି ସ୍ଥାନରେ ଏହାକୁ କଲରାଫୁଲିଆ ବାଘ କହନ୍ତି । ମହାବଳବାଘ ସବୁଠାରୁ ବଡ଼, ଦେଖିବାକୁ ମଧ୍ୟ ସବୁଠାରୁ ସୁନ୍ଦର । ଲାଙ୍ଗୁଡ଼ ସହିତ



ଏହାର ଦେହ ବାରହାତ ପର୍ଯ୍ୟନ୍ତ ଲମ୍ବ ହୋଇଥାଏ । ଏହାର ଦେହର ବର୍ଣ୍ଣ ନଡ଼ିଆ ରଙ୍ଗ ପରି । ଦେହରେ ଉପରୁ ତଳକୁ ପଟାପଟା ଚିହ୍ନ ଥାଏ । ଏମାନଙ୍କର ଏତେ ବଳ ଯେ ଗୋଟାଏ ମନୁଷ୍ୟକୁ ପିଠିରେ ପକାଇ କୁଦି କୁଦି ଚାଲିଯାଇ ପାରନ୍ତି । ବାଘମାନେ ପର୍ବତରେ ଓ ଜଙ୍ଗଲରେ ଥାନ୍ତି । ସମୁଦ୍ରକୂଳରେ ବଡ଼ ବଡ଼ କୁଦମାନଙ୍କରେ ମଧ୍ୟ ବାଘ ରହୁଥାନ୍ତି । ଏମାନଙ୍କୁ ଲୁଣୀ ବାଘ କହନ୍ତି ।

ବାଘମାନେ ଅନ୍ୟ ଜୀବ ମାରି ଖାଆନ୍ତି । ଯେଉଁ ଜୀବକୁ ଆଉ କେହି ମାରିଥିବ, ତାକୁ ବାଘ ଖାଏ ନାହିଁ ବୋଲି ଲୋକେ କହନ୍ତି । ମାଈ ପୋଷା ବାଘ ଏପରି ଜୀବର ମାଂସ ଖାଏ । ଅନ୍ୟ ଜୀବକୁ ଧରି ବାଘ ତତ୍‌କ୍ଷଣାତ୍ ଖାଇଯାଏ ନାହିଁ । ପ୍ରଥମେ ତାକୁ ଏପରି ଆଘାତ କରେ ସେ ଯେପରି ପଳାଇ ପାରିବ ନାହିଁ । ତହିଁଉତ୍ତାରୁ ତାକୁ ଘେନି ଖେଳି ଖେଳି ମାରିପକାଏ ।

ହେଣ୍ଟାବାଘ ଦେହରେ ବଳ ଅଳ୍ପ । ତେଣୁ ତାହାର ସାହସ ମଧ୍ୟ ଅଳ୍ପ । ମନୁଷ୍ୟ ଦେଖିଲେ ସେ ପ୍ରାୟ ପଳାଇଯାଏ । କଲରାପତରିଆ ବାଲୁଆ, କୁକ୍କୁର, କୁକୁଡ଼ା, ବାଛୁରୀ ପ୍ରଭୃତି ମାରି ଖାଏ । ସେ କେତେ-ବେଳେ କେତେବେଳେ ମନୁଷ୍ୟଙ୍କୁ ଧରେ । ମହାବଳ ବଡ଼ ବାଘୁଆ । ସେ ସବୁ ଜୀବକୁ ଧରେ । ହାତୀପରି ବଡ଼ ଜୀବକୁ ସେ ଛାଡ଼େ ନାହିଁ । ତାହାର ଆଖି ଦଉଟି ବଡ଼ ବଡ଼ ମଣିପରି ଜଳୁଥାଏ । ସେ ଆଖି ଦେଖିଲେ ଅନେକେ ହତଜ୍ଞାନ ହୋଇ ପଡ଼ିଯାନ୍ତି । ଭାଲୁ ଯେପରି ହଠାତ୍ ମନୁଷ୍ୟକୁ ଦେଖିଲେ ଧରେ, ବାଘ ସେପରି ଧରେ ନାହିଁ, ଆପଣାର ସୁବିଧା ଦେଖି ଧରେ । ବାଘ ଅନ୍ୟ ଜୀବର ବେକ କାମୁଡ଼ି ତାକୁ ଝାଡ଼ିଦିଏ ।

## ଉଦ୍ଭିଦ ।

କୌଣସି ସ୍ଥାନରେ କିଛି ମାଟି ଖୋଳି ଗୁଣ୍ଡ କରି ସେଥିରେ କେତୋଟି ଧାନ ପକାଇ ତାହା ଉପରେ କିଛି ମାଟି ଘାଣ୍ଟିଦିଅ । ଦୁଇ ତିନି ଦିନ ଛାଡ଼ି ସେଠାରେ ଅଳ୍ପ ଅଳ୍ପ ଜଳ ସିଞ୍ଚିଦିଅ । ଏପରି କିଛିଦିନ କଲେ ଦେଖିବ ମାଟି ଫୋଡ଼ି ଧାନମାନଙ୍କରୁ ଉପରକୁ ଗଜା ବାହାରିଅଛି । ଆଉ କୌଣସି ମଞ୍ଜି ଏହିପରି ମାଟିରେ ପୋତି ତାହା ଉପରେ ଜଳ ଦିଅ, ଦେଖିବ ସେହିପରି ମାଟି ଫୋଡ଼ି ଉପରକୁ ଗଜା ବାହାରି-ଅଛି । ଗଜା ବଢ଼ିଲେ ଗଛ ହୁଏ । ମାଟି ଭେଦ କରି ମଞ୍ଜିରୁ ଉପରକୁ ଉଠେ ବୋଲି ଗଛକୁ ଉଦ୍ଭିଦ କହନ୍ତି । ଘାସ ଉଦ୍ଭିଦ, ଶବଗଛ ଉଦ୍ଭିଦ, ଜହ୍ନି କାକୁଡ଼ି ଗଛ ଉଦ୍ଭିଦ । ଆମ୍ବ, ପଣସ, ବଟ, ଅଶ୍ୱତ୍ଥ ଗଛ ମଧ୍ୟ ଉଦ୍ଭିଦ ।

ଉଦ୍ଭିଦ ମଧ୍ୟରେ ବଟ, ଅଶ୍ୱତ୍ଥ, ଆମ୍ବ, ପଣସ ପ୍ରଭୃତି ବଡ଼ ବଡ଼

ଗଛ ମାଟି ଉପରେ ଠିଅହୋଇ ସବୁ ଦିଶନ୍ତି । ଏମାନଙ୍କୁ ବୃକ୍ଷ କହନ୍ତି, ମଧ୍ୟ ତରୁ କହନ୍ତି । ଝଗର, ତୁଳସୀ, ବାଇଗଣ ପ୍ରଭୃତି ସେହିପରି ଠିଅ ହୋଇଥାନ୍ତି, ମାତ୍ର ଆମ୍ବ, ପଣସ ପ୍ରଭୃତି ଗଛଠାରୁ ବହୁତ ସାନ । ଏମାନଙ୍କୁ ଗୁଳ୍ମ କହନ୍ତି । କଖାରୁ, ଲାଉ, ଜହ୍ନି, କାକୁଡ଼ି, କଲରା ପ୍ରଭୃତି ଗଛ ଠିଅ ହୋଇ ପାରନ୍ତି ନାହିଁ, ଅନ୍ୟ ଗଛ ଉପରେ, ମାଟିରେ ବା ମଞ୍ଚାରେ ଲଟାଇ ଲଟାଇ ମାଡ଼ନ୍ତି । ଏମାନଙ୍କୁ ଲତା କହନ୍ତି । ଉଦ୍ଭିଦମାନଙ୍କ ମଧ୍ୟରେ ଏ ତିନ ଜାତି ପ୍ରଧାନ ।

ଏମାନଙ୍କୁ ଛାଡ଼ି ଆହୁରି କେତେକ ଜାତି ସାନ ସାନ ଉଦ୍ଭିଦ ଅଛନ୍ତି । ଘାସ ଜାତି ଉଦ୍ଭିଦ ସେ ତିନ ଜାତି ଉଦ୍ଭିଦଠାରୁ ସାନ । ଶିଉଳି ଆଉ ଏକ ଜାତି ଉଦ୍ଭିଦ । ପୁଣି ଛତୁ ଆଉ ଏକ ଜାତି । ଯେଉଁ ଉଦ୍ଭିଦ-ମାନେ ଅନ୍ୟ ଉଦ୍ଭିଦ ଉପରେ ଚେର ଧରି ବଞ୍ଚନ୍ତି, ସେମାନଙ୍କୁ ମଲଙ୍ଗ କହନ୍ତି । ନିର୍ମୂଳୀ ଗଛ ଏକପ୍ରକାର ମଲଙ୍ଗ ଅଟେ । ବର ଓ ଅଶ୍ୱତ୍ଥ ଗଛ ଅନ୍ୟ କୌଣସି କୌଣସି ଗଛ ଉପରେ ମଲଙ୍ଗ ହୋଇ ବଢ଼ନ୍ତି, ଦେଖି ପାରିବ ।

ଉଦ୍ଭିଦମାନଙ୍କ ଦ୍ୱାରା ଆମ୍ଭମାନଙ୍କର ବହୁତ ଉପକାର ହୁଏ । ଚାଉଳ, ପରିବା, ଡାଲି ପ୍ରଭୃତି ଖାଇ ଆମ୍ଭେମାନେ ବଞ୍ଚିଅଛୁଁ । ଏଗୁଡ଼ିକ ଉଦ୍ଭିଦରୁ ମିଳେ । କପା ଗଛ ଗୋଟିଏ ଉଦ୍ଭିଦ । ଏହାର ଫଳ ପାଚିଲା ହୋଇ ଫାଟିଗଲେ ସେଥିରୁ ତୁଳା ବାହାରେ । ଏହି ତୁଳାରୁ ସୂତା କଟାଯାଏ । ସୂତାରେ ଲୁଗା ବୁଣାଗଲେ ଆମ୍ଭେମାନେ ତାହା ପିନ୍ଧୁଁ । ଉଦ୍ଭିଦରୁ ଆମ୍ଭମାନଙ୍କର ଲୁଗା ଆସୁଛି, ବୁଝି ପାରିଲ । କାଠରେ ଆମ୍ଭ-ମାନଙ୍କର କେତେ ଉପକାର ହେଉଅଛି । ତାହା ଉଦ୍ଭିଦରୁ ଆସୁଛି । କାଉଁଶବତାରେ, ଏବଂ ତୃଣ କୁଟା ବା ନଡ଼ାରେ ଘରର ଛାଲି ଛପର ହୁଏ । ସେଗୁଡ଼ିକ ଶୁଖିଲା ଉଦ୍ଭିଦ । ଫୁଲ ଫଳଗୁଡ଼ିକ ଉଦ୍ଭିଦରୁ ମିଳେ । ଉଦ୍ଭିଦ ନ ଥିଲେ ପାଚିଲା ଆମ୍ବ, ପାଚିଲା କଦଳୀ, ପାଚିଲା ପଣସ,

ନଡ଼ିଆ, କାକୁଡ଼ି, କୋଳ୍ଳ କାହିଁରୁ ପାନ୍ତ ? ଯେଉଁଠାରେ ଉଦ୍ଭିଦ ନ ଥାଏ, ସେ ସ୍ଥାନ ଶୂନ୍ୟ ଦଶେ । ମାତ୍ର ଉଦ୍ଭିଦଗୁଡ଼ିଏ ଥିଲେ ସ୍ଥାନଟି ସୁନ୍ଦର ଦଶେ ।

## ରାଧାଶ୍ୟାମ ନରେନ୍ଦ୍ର ।

କଟକ ଜିଲ୍ଲାରେ କେନ୍ଦ୍ରାପଡ଼ା ଗୋଟିଏ ସାନ ସହର । ଏଠାରେ ରାଧାଶ୍ୟାମ ନରେନ୍ଦ୍ର ନାମରେ ଜଣେ ଲୋକ ଥିଲେ । ତାଙ୍କର ବହୁତ ଜମିଦାରି ଏବଂ କୋଠାଘର ଥିଲା । ସେ ଦୁଃଖୀମାନଙ୍କୁ ପ୍ରତିଦିନ ଚାଉଳ, ପଇସା ଏବଂ କେବେ କେବେ ଲୁଗା ଦେଉଥିଲେ । ପ୍ରତିଦିନ ଦୁଃଖୀ-ମାନଙ୍କୁ ଚାଉଳ, ପଇସା ବା ଭାତ ଦେବାକୁ ସଦାବ୍ରତ କହନ୍ତି ।

ଅଷାଢ଼, ଶ୍ରାବଣ, ଭାଦ୍ର ଓ ଆଶ୍ୱିନ ଏହି ଚାରି ମାସରେ ବହୁତ ବର୍ଷା ହୁଏ । ଏ ଚାରି ମାସକୁ ଚତୁର୍ମାସ୍ୟା କହନ୍ତି । ଚତୁର୍ମାସ୍ୟାରେ ବାଟ ଯିବା-ଆସିବା କଠିନ, ବହୁଦୂରକୁ ଯିବା ବଡ଼ କଠିନ । ଭଲ ଭଲ ଲୋକେ ବହୁ ଦୂରକୁ ତୀର୍ଥ କରିବାକୁ ଆସି, ଚତୁର୍ମାସ୍ୟାରେ ଯାଇ ନ ପାରିଲେ ଏବଂ ହାତରେ ଖରଚ ନ ଥିଲେ, ରାଧାଶ୍ୟାମ ନରେନ୍ଦ୍ରଙ୍କ ଘରେ ପହଞ୍ଚୁ-ଥିଲେ । ସେ ସେମାନଙ୍କୁ ଆଦର କରି ରହିବା ପାଇଁ ସ୍ଥାନ ଦେଉଥିଲେ ଏବଂ ଖାଇବାର ସୁବିଧା କରିଦେଉଥିଲେ । ଚତୁର୍ମାସ୍ୟା ଶେଷରେ ପ୍ରତ୍ୟେକଙ୍କୁ ଖଣ୍ଡିଏ ଲେଖାଏଁ କମ୍ବଳ ଦେଇ ବିଦାୟ କରୁଥିଲେ ।

ରାଧାଶ୍ୟାମ ନରେନ୍ଦ୍ରଙ୍କ ସଦାବ୍ରତ ଏଦେଶରେ ଅନେକେ ଜାଣନ୍ତି । ତାଙ୍କ ସଦାବ୍ରତ ଦେଖି ଅନ୍ୟ ଜମିଦାର କେହି କେହି ଆପଣା ଘର-ଠାରେ ସଦାବ୍ରତ ପିଟାଇଲେ । ସେ ଦୁଃଖୀମାନଙ୍କୁ ଏତେ ଦାନ କଲେ ସୁଦ୍ଧା ମନରେ କିମ୍ବା କଥାରେ ଗର୍ବ କରୁ ନ ଥିଲେ । ଆଜଯାଏ ଲୋକେ ତାଙ୍କୁ ଧନ୍ୟ ଧନ୍ୟ କରୁଅଛନ୍ତି ।



## ଘୋଡ଼ା ।

ତୁମ୍ଭେମାନେ ଘୋଡ଼ା ଦେଖିଥିବ । ତାହାର ବେକ ଓ ଲାଙ୍ଗୁଡ଼ଯାକ ଅତି ବଡ଼ ବଡ଼ ଲୋମ ଥାଏ । ଘୋଡ଼ା ଗୋରୁଠାରୁ ବଡ଼ ହୁଏ । ତାହାର ମଧ୍ୟ ଗୋଡ଼ରେ ଖୁରା ଅଛି । ମାତ୍ର ଗୋରୁଖୁରା ଯେପରି ମଝିରୁ ଦୁଇ ଫାଳ ହୋଇଥାଏ, ଘୋଡ଼ାଖୁରା ସେପରି ନ ହୋଇ ଗୋଟା ଗୋଟା ଥାଏ । ଘୋଡ଼ାଖୁରାକୁ ତାହାର ଟାପୁ କହନ୍ତି । ଏହା ଅତି ଟାଣ ବୋଲି

ଘୋଡ଼ା ଚାଲିଲାବେଳେ ଠକ୍ ଠକ୍ ଶବ୍ଦ ହୁଏ । ଘୋଡ଼ାର ଗୋଡ଼ଗୁଡ଼ିକ ଲମ୍ବ ଓ ସରୁ, ଏଣୁ ସେ ଅତି ଶୀଘ୍ର ଶୀଘ୍ର ଦୌଡ଼ିପାରେ । କହିଲ, ଗୋରୁର କଅଣ ଅଛି, ଯାହା ଘୋଡ଼ାର ନାହିଁ?

ଗୋରୁପରି ଘୋଡ଼ା ଘାସ ଖାଏ । ଦେହରେ ଅଧିକ ବଳ ହେବ ବୋଲି ଚାଉଳ, କୋଳଥ ବା ବୁଟ ସିଝାଇ ଘୋଡ଼ାକୁ ଖାଇବାକୁ ଦିଅନ୍ତି । ଏହାକୁ ଘୋଡ଼ାଦାନା କହନ୍ତି । ଦାନା ସଙ୍ଗରେ କିଛି ଲୁଣ ଖାଇବାକୁ ଦେଲେ ଘୋଡ଼ାଦେହକୁ ଭଲ ହୁଏ । ପୋଖରୀମାନଙ୍କରେ ଏକପ୍ରକାର ଲମ୍ବ ଲମ୍ବ ଦଳ ହୁଏ, ତାକୁ ମଧ୍ୟ ଘୋଡ଼ା ଖାଏ । ଏହି ଦଳକୁ ଘୋଡ଼ା-ଦଳ କହନ୍ତି ।

ଘୋଡ଼ା ମନୁଷ୍ୟର ଅନେକ କାମରେ ଲାଗେ । ଏ ଦେଶରେ ଲୋକେ ଘୋଡ଼ା ଚଢ଼ନ୍ତି । ସହରମାନଙ୍କରେ ଘୋଡ଼ା ଗାଡ଼ି ଟାଣେ । ଆମ୍ଭମାନଙ୍କ ଦେଶରେ ଗୋରୁ ପିଠିରେ ଯେପରି ବୋଝ ଲଦ ନିଅନ୍ତି, ପଶ୍ଚିମରେ ଘୋଡ଼ା ପିଠିରେ ସେହିପରି ବୋଝ ଲଦ ନିଅନ୍ତି । ସାହେବମାନଙ୍କ ଦେଶରେ ଘୋଡ଼ାରେ ହଳକରନ୍ତି । ତେଣେ ଗୋଟିଏ ଦେଶ ଅଛି, ସେଥିରେ ସଡ଼କ ବାଟ ଅଳ୍ପ, ପାଣି ନାଳ ଅଧିକ । ପାଣିରେ ନାଆ ଚଳେ, ସେଥିରେ ମନୁଷ୍ୟ ଯାନ୍ତି, ବୋଝ ଯାଏ । ଘୋଡ଼ା ନାଳ-କୂଳରେ ଚାଲି ନାଆ ଟାଣୁଥାଏ । ଘୋଡ଼ା ଅତି ଶୀଘ୍ର ଦୌଡ଼ିପାରେ ବୋଲି ଲୋକେ ତାହା ଉପରେ ଚଢ଼ନ୍ତି, ଓ ତାକୁ ଗାଡ଼ିରେ ଲଗାନ୍ତି । ଘୋଡ଼ା ରଖିଲେ ତାକୁ ଭଲ କରି ଘାସ ଓ ଦାନା ଖାଇବାକୁ ଦେବ ।

## କୋକିଳ ।

ଆଇଲା ବସନ୍ତ ଋତୁ, ପତ୍ର କଅଁଳିଲା,
କୁହୁ କୁହୁ କୁହୁ କରି କୋଇଲି ଗାଇଲା ।

ଘଞ୍ଚ ଗହଳରେ କାହିଁ ଲୁଚି ବସିଅଛୁ,
ତେବେ ଦୂର ଯାଏ କଣ୍ଠୁ ଅମୃତ ଢାଳୁଛୁ ।
ନ ହରେ କାହାର ମନ, କୁହୁ ରାବ କରେ,
ଜନମାଏ ଆନନ୍ଦ ସେ ସକଳ ମନରେ ।
ରୂପ ସିନା କଳା ତାର ଗୁଣ ମନୋହର,
ସକଳେ ତାହାଙ୍କୁ ତେଣୁ କରନ୍ତି ଆଦର ।
ଯାହାର କୋକିଳ ପରି ଭଲ ଗୁଣ ଥିବ,
ହେଲେ ମଧ୍ୟ ରୂପ ମନ୍ଦ ସେ ପୂଜା ପାଇବ ।



## ଭାଲୁ ।

ଭାଲୁ ଚତୁଷ୍ପଦ ଜୀବ । ଏହାର ଦେହଯାକ ବଡ଼ ବଡ଼ କଳା ଲୋମ

ଥାଏ, କେବଳ ନାକର ଅଗରୁ ପ୍ରାୟ ଆଖି ପର୍ଯ୍ୟନ୍ତ କିଛି ନ ଥାଏ । ତାହାର ମୁଖର ଏହି ଅଂଶ ବଡ଼ ଧଳା । ଚାରି ଗୋଡ଼ର ଅଙ୍ଗୁଳିମାନଙ୍କରେ ନଖ ଅଛି । ସେହି ନଖ ଧଳା ଓ ବଡ଼ । ଭାଲୁର ପେଟରେ ଯେଉଁ ଲୋମ ଥାଏ, ତାହା ପିଠିଲୋମପରି କଳା ନୁହେଁ, କିମ୍ବା ବଡ଼ ନୁହେଁ । ଭାଲୁର ଲାଙ୍ଗୁଡ଼ ସାନ ।

ଜଙ୍ଗଲରେ ଏବଂ ପାହାଡ଼ର ଗୁମ୍ଫାମାନଙ୍କରେ ଭାଲୁ ରହେ । ଭାଲୁ ପାଚିଲା କୋଳି, ଆମ୍ବ, ମଙ୍କା ପ୍ରଭୃତି ଫଳ, ମହୁଲ ଏବଂ ଆଖୁ ଖାଏ ।

ଦିନବେଳେ ଭାଲୁମାନେ ପ୍ରାୟ ବାହାରନ୍ତି ନାହିଁ । ଦିନ ଶେଷ ହୋଇଆସିଲେ ବାହାରି ଏମାନେ ଆଖୁବାଡ଼ି ପ୍ରଭୃତିରେ ପଶନ୍ତି ଏବଂ ବାଟରେ ଅନ୍ୟ ଜୀବ ଭେଟିଲେ ଧରନ୍ତି । ଏମାନେ ମୋଟା ଗଛକୁ ଚଢ଼ି ପାରନ୍ତି, ମାତ୍ର ସରୁ ଗଛକୁ ଚଢ଼ି ପାରନ୍ତି ନାହିଁ । ଆମ୍ବ ପାଚିଲେ ଭାଲୁ ଗଛରେ ଚଢ଼ି ଡାଳ ହଲାଏ । ବହୁତଗୁଡ଼ିଏ ଆମ୍ବ ତଳେ ପଡ଼ିଲେ, ଗଛରୁ ଓହ୍ଲାଇ ଆସି ସେଗୁଡ଼ିକୁ ଖାଏ । ଦୁଇଟି ଭାଲୁ ଏକ ସଙ୍ଗରେ ଥିଲେ ଓ ଗୋଟିଏ ଗଛରେ ଚଢ଼ି ଆମ୍ବ ଖସାଇଲେ, ଅନ୍ୟଟି ତଳେ ରହି ଗୋଟିଏ ଗୋଟିଏ ଖାଉଥାଏ । ଯେ ଭାଲୁ ଗଛରେ ଚଢ଼ିଥାଏ, ସେ ତଳକୁ ଆସି ଆମ୍ବ ନ ଦେଖିଲେ ଦୁହିଙ୍କ ମଧ୍ୟରେ କାମୁଡ଼ା କାମୁଡ଼ି ଓ କଳି ହୁଏ । ଆଖୁବାଡ଼ିରେ ପଶିଲେ ଭାଲୁ ବହୁତ କ୍ଷତି କରେ । ଭାଲୁମାନେ ଉଇ ଖାଇବାକୁ ବଡ଼ ଭଲ ପାନ୍ତି । ଉଇହୁଙ୍କା ଦେଖିଲେ ଏମାନେ ଭାଙ୍ଗି ତାହା ମଧ୍ୟରୁ ଉଇଗୁଡ଼ିକ ଖୋଜି ଖାଇଯାନ୍ତି । ମନୁଷ୍ୟ ଭେଟିଲେ ଏମାନେ ପଛ ଦୁଇ ଗୋଡ଼ରେ ଠିଆହୋଇ, ତାହା ଉପରକୁ ଆଗ ଦୁଇ ଗୋଡ଼ ବଢ଼ାଇ ଦେଇ ତାହାକୁ ଧରନ୍ତି । ଲୋକେ କହନ୍ତି ଭାଲୁ ମନୁଷ୍ୟର ନାକ ଆଗେ କାମୋଡ଼ି ଖାଇଯାଏ । ଡରାଇଲେ ଭାଲୁ ମିଶି ନ ଆସି ପଳାଇ ଯାଏ । ନିଆଁ ଦେଖିଲେ ଦେହର ଲୋମ ପୋଡ଼ିଯିବ ବୋଲି ବଡ଼ ଭୟ

କରେ । କଅଁର ହୁଳା, ମଶାଲ ବା ଲଣ୍ଠନ ଧରି ଗଲେ, ଭାଲୁ ପାଖକୁ ଆସେ ନାହିଁ । ଯେ ଲୋକର ସାହସ ଅଛି, ତାହା ହାତରେ କିଛି ନ ଥିଲେ ମଧ୍ୟ ଭାଲୁ ତାହା ପାଖ ପଶି ପାରେ ନାହିଁ ।

## ବାଟରେ ଭାଲୁ ସହିତ ଭେଟ ।

ବାଲେଶ୍ୱର ଜିଲ୍ଲାର ଶାଳବଣି ଗ୍ରାମର ଜଣେ ଗଉଡ଼ ବହୁତ ରାତିରେ ଏକାକୀ ଆପଣା ଘରକୁ ଫେରି ଯାଉଥିଲା । ବାଟରେ ଗୋଟାଏ ଭାଲୁ ଭେଟିବାରୁ ସେ ନ ଡରି ମନେ ମନେ ଗୋଟାଏ ବୁଦ୍ଧି ପାଞ୍ଚିଲା । ଦୁଇ ହାତରେ ସେ ତାଳି ଦେଇ ଏପରି ଶବ୍ଦ କଲା ଯେ ଭାଲୁ ଭୟରେ ପଳାଇଗଲା ।

ପୁରୀ ଜିଲ୍ଲାରେ କାକଟପୁର ଗ୍ରାମ ନିକଟରେ ସାନ ସାନ ଜଙ୍ଗଲରେ ବହୁତ ଭାଲୁ ଅଛନ୍ତି । ଦିନେ ଉପରଓଳି ସୂର୍ଯ୍ୟ ଅସ୍ତ ନ ହେଉଣୁ ଲତାହରଣ ଗ୍ରାମର ଗୋଟିଏ ଲୋକ ବାଟରେ ଯାଉଥିଲା । ଏହି ସମୟରେ ଗୋଟାଏ ବଡ଼ ଭାଲୁ ହଠାତ୍ ଆଗରେ ପହଞ୍ଚି ସେ ଲୋକ-ଟିର ବାମ ବାହୁ ଧରିଲା । ସେ ଡାହାଣ ହାତ ମୁଠା କରି ଭାଲୁ ଗାଲରେ ଏପରି ଗୋଟିଏ ଚୁନା ମାରିଲା ଯେ ତାହା ବାହୁରୁ ଭାଲୁର ଗୋଡ଼ ଖସିଗଲା । ଏହା ଦେଖି ଭାଲୁ ଭୟରେ ପଳାଇଗଲା ।

## ଉଈ ।

ଉଈ ଦେଖିବାକୁ ପିମ୍ପୁଡ଼ିପରି । ପିମ୍ପୁଡ଼ି ନାଲି ବା କଳା ହୁଏ, ଉଈ ଧଳା । ନାଲି ପିମ୍ପୁଡ଼ି ଯେତିକି ବଡ଼, ଉଈ ସେତିକି ବଡ଼ ହୁଏ । ପିମ୍ପୁଡ଼ି ଦେହଠାରୁ ଉଈଦେହ ଅଧିକ କୋମଳ ଅଟେ । ପିମ୍ପୁଡ଼ିମାନେ ବିଲ କରି ସେଥିରେ ରହନ୍ତି, ମାତ୍ର ଉଈମାନେ ହୁଙ୍କା କରି ତହିଁ ମଧ୍ୟରେ

ରହନ୍ତି । ହୁଙ୍କାକୁ ବାଲେଶ୍ୱର ଜଲ୍ଲାରେ ଟିକରା ବୋଲି କହନ୍ତି । ଉଇ-ହୁଙ୍କା ଭଲ କରି ଦେଖିଲେ ଜାଣି ପାରିବ ଉଇମାନଙ୍କର ବୁଦ୍ଧି କପରି । ମାଟିରେ କମ୍ପା ମାଟି ଓ ବାଲିରେ ଦେଉଳଅ କରି ସେମାନେ ହୁଙ୍କାକୁ ଏପରି ଗଢ଼ିଥାନ୍ତି ଯେ ବର୍ଷାକାଳରେ ବହୁତ ବର୍ଷାରେ ସୁଦ୍ଧା ତାହା ଭିତରକୁ ବର୍ଷାଜଳ ଭେଦି ପାରେ ନାହିଁ । କୌଣସି ଠାଣ ପଦାର୍ଥରେ ହୁଙ୍କାକୁ ପିଟିଲେ ତାହା ସହଜରେ ଭାଙ୍ଗି ଯାଏ ନାହିଁ । ହୁଙ୍କା ଭିତର ଫମ୍ପା ଓ ବଡ଼ ସୁଡଙ୍ଗ ହୋଇଥାଏ । ଦେଖିଲେ ବୋଧ ହୁଏ ଯେପରି କେହି ଲେପି ପୋଛି ଅଣିଛି । ମାଟି ଉପରେ ଉଇହୁଙ୍କାର ଯେତକ ଦିଶେ, ସେଥିରେ ଉଇମାନେ ନ ଥାନ୍ତି । ସେମାନେ ଅନ୍ତର ତଳେ ଥାନ୍ତି । ସେମାନେ ହୁଙ୍କାର ଯେଉଁଠାରେ ଥାନ୍ତି, ତାହା ହାଲୁକା ଏବଂ ଚଉଡ଼ା ପିଠାପରି ଜାଲି ଜାଲି ହୋଇଥାଏ । ତାହାକୁ ଉଇଠାକୁ କହନ୍ତି ।

କାଠ ଓ ଗଛରେ ଉଇ ବହୁତ ଲାଗନ୍ତି । ଶୁଖିଲା ପତ୍ରରେ, କାନ୍ଥରେ, ପୋଥିରେ, ବହିରେ ଓ ଲୁଗାରେ ମଧ୍ୟ ଉଇ ଲାଗନ୍ତି । ମାତ୍ର କୁଠା ଓ ନଡ଼ାରେ ପ୍ରାୟ ଲାଗନ୍ତି ନାହିଁ । କାଠ ଓ କାନ୍ଥରେ ଅଲକାତରା ଲେପି ଦେଲେ ଉଇ ଲାଗି ପାରନ୍ତି ନାହିଁ । ପାହାଡ଼ିଆ ସ୍ଥାନରେ ଯେତେ ଉଇ, ଅନ୍ୟ ସ୍ଥାନରେ ସେତେ ଉଇ ଦେଖାଯାଏ ନାହିଁ ।

## ପିମ୍ପୁଡ଼ି ।

ପିମ୍ପୁଡ଼ି ଅତି ସାନ ପୋକ । ଏହାର ଛଅଟି ଗୋଡ଼ ଅଛି । ଦେହ ଯେପରି ସାନ, ଗୋଡ଼ଗୁଡ଼ିକ ସେହିପରି ସରୁ । ଗୋଡ଼ମାନଙ୍କରେ ଅଉଁଶ ବା ଅଁଶୁ ଅଛି । ମାତ୍ର ଆମ୍ଭମାନଙ୍କ ଆଖିକି ତାହା ଦିଶେ ନାହିଁ । ପିତ୍ତଳ ନଳମାନଙ୍କରେ କେତେଗୁଡ଼ିଏ କାଚ ଦେଇ ଏକପ୍ରକାର ଯନ୍ତ୍ର ତିଆରି କରିଥାନ୍ତି । ତାହା ତଳେ ସାନ ପଦାର୍ଥ ରଖି ଉପରୁ ଗୋଟିଏ

ପକ୍ଷି ବୁଜ ଅନ୍ୟ ଅଖିରେ କାଚମାନଙ୍କୁ ଦେଇ ଚାହିଁଲେ ପଦାର୍ଥଟି ବହୁତ ବଡ଼ ଦିଶେ । ସେହି ଯନ୍ତ୍ରଦ୍ୱାରା ପିମ୍ପୁଡ଼ିର ଗୋଡ଼ ଓ ଦାନ୍ତ ଅର୍ଦ୍ଧଣ ବା ଅଁଣ୍ଡଗୁଡ଼ିକ ଦେଖିଲେ କପରି ଦିଶେ ତାହା ଜାଣି ପାରିବ ।

ନାଲ ପିମ୍ପୁଡ଼ି ବହୁତ ଦେଖାଯାନ୍ତି । ଆଉ ଜାତିଏ ପିମ୍ପୁଡ଼ି ଅଛି ତାହାର ବର୍ଣ୍ଣ କଳା । ଏହି ପିମ୍ପୁଡ଼ିକୁ କାଇ ପିମ୍ପୁଡ଼ି, କଳା ପିମ୍ପୁଡ଼ି, ସଡ଼ସଡ଼ା ବା ଡଗଗ୍ରା ପିମ୍ପୁଡ଼ି କହନ୍ତି । ନାଲ ପିମ୍ପୁଡ଼ି ମନୁଷ୍ୟ ଦେହରେ କାମୁଡ଼ିଦେଲେ ଅଳ୍ପ କୁଣ୍ଡାଇହୁଏ ଓ ଅଳ୍ପ ଜ୍ୱଳେ । ସଡ଼ସଡ଼ା ବା ଡଗଗ୍ରା ପିମ୍ପୁଡ଼ି ପ୍ରାୟ କାମୁଡ଼େ ନାହିଁ । ସେ ମନୁଷ୍ୟ ଦେହରେ ଚାଲିଲେ ସଲସଲ ଲାଗେ ।

ପିମ୍ପୁଡ଼ିମାନଙ୍କର ପାଟିରେ ଦାନ୍ତ ଅଛି । ଏମାନଙ୍କର ନାକ ଆମ୍ଭ-ମାନଙ୍କୁ ଦିଶେ ନାହିଁ, ମାତ୍ର ଏମାନେ ଯେତେ ଦୂରରୁ ଗନ୍ଧ ଜାଣି ପାରନ୍ତି, ମନୁଷ୍ୟ କିମ୍ବା ଆଉ କୌଣସି ଜୀବ ତେତେ ଦୂରରୁ ଜାଣି ପାରିବେ ନାହିଁ । ଯେଉଁଠାରେ ପିମ୍ପୁଡ଼ିର ଅଦୌ ଦେଖା ନାହିଁ, ସେଠାରେ କିଛି ଚିନି ପକାଇଦିଅ । ଦେଖିବ ଅଳ୍ପ ସମୟରେ ପିମ୍ପୁଡ଼ିଗୁଡ଼ିଏ କାହୁଁ ଆସି ପହଞ୍ଚିବେ ।

ପିମ୍ପୁଡ଼ିମାନେ ମାଟିରେ ବିଲ କରି ରହନ୍ତି । ସେହି ବିଲ ସେମାନଙ୍କର ଘର । ସେହି ଘରେ ସେମାନେ ଚାଉଳ, ଖୁଦ ପ୍ରଭୃତି ଅଳ୍ପେ ଅଳ୍ପେ ଜମା କରି ରଖନ୍ତି । ଯେତେବେଳେ ସେମାନଙ୍କୁ ଖାଇବାପାଇଁ ଅନ୍ୟ କୌଣସି-ଠାରେ ନ ମିଳେ, ସେତେବେଳେ ସେମାନେ ତାହା ଖାନ୍ତି । ଏଥିରୁ ଜାଣିବ ପିମ୍ପୁଡ଼ିମାନଙ୍କର କିଛି ବୁଦ୍ଧି ଅଛି ।

ପିମ୍ପୁଡ଼ିମାନଙ୍କର ବଡ଼ ମେଳ ଦେଖାଯାଏ । ପିମ୍ପୁଡ଼ିମାନେ ଗୋଟିଏ ସାନ ସାପ ପଡ଼ିଲେ ସେମାନେ ତାହା ଦେହରେ ଏପରି ଲଗିଯାନ୍ତି ଯେ ସାପ କୌଣସିମତେ ସେମାନଙ୍କୁ ଛଡ଼ାଇ ପାରେ ନାହିଁ, କିମ୍ବା ବହୁତ

ଦୂର ଯାଇ ପାରେ ନାହିଁ । ପିମ୍ପୁଡ଼ିକାମୁଣ୍ଡାରେ ସେ ସେହିଠାରେ ମରି-ଯାଏ । ଯେତେବେଳେ ତୁମ୍ଭମାନଙ୍କ ମଧ୍ୟରୁ ଜଣେ କେହି ଏକା କୌଣସି ଭଲ କାର୍ଯ୍ୟ କରି ପାରୁ ନ ଥିବ, ସେତେବେଳେ ତୁମ୍ଭେମାନେ ସମସ୍ତେ ପିମ୍ପୁଡ଼ିମାନଙ୍କ ପରି ମେଳ ବାନ୍ଧି ସେହି କାର୍ଯ୍ୟ କରିବ ।

## ପିମ୍ପୁଡ଼ି ।

ପିମ୍ପୁଡ଼ିର ସାନ ଦେହ ଗୁଣ ନୁହେ ସାନ,
କେ କରିବ ପରିଶ୍ରମ ପିମ୍ପୁଡ଼ି ସମାନ ।

ଯାହା ଯହିଁ ପାଏ, ତାହା ଅଣଇ ସେ ବହି,
କିଛି ଖାଏ, କିଛି ପୁଣି ସଞ୍ଚୟ କରଇ ।

ଶୀତ ଦିନେ ପିମ୍ପୁଡ଼ିକୁ ବହୁତ ମିଳଇ,
ଖରାରେ ଯା ମିଳେ, ତାକୁ ଭୁଣା ନ ହୁଅଇ ।

ବରଷା କାଳରେ ଜଳେ କାଠ ବୁଡ଼ିଯାଏ,
ଯାଇ ଆସି ନ ପାରେ ସେ ଭଣ୍ଡାର ଫିଟାଏ ।

ବେଳହୁଁ ପିମ୍ପୁଡ଼ି ଯେଣୁ ସଞ୍ଚ ରଖିଥିଲା,
ଘୋର ବରଷାରେ କଷ୍ଟ ତାକୁ ନ ବାଧିଲା ।

ଯେ ସଞ୍ଚ ରଖଇ, ସେହୁ ଦୁଃଖ ପାଏ ନାହିଁ ।
ଜପରି ସଞ୍ଚୟ, ଶିଖ ପିମ୍ପୁଡ଼ିକ ଠୁହିଁ ।



## ବଗିଚା ।

ଅନେକଗୁଡ଼ିଏ ଫୁଲ ବା ଫଳର ଗଛ ଯେଉଁଠାରେ ଲଗାଯାଇଥାଏ, ସେ ସ୍ଥାନକୁ ବଗିଚା କହନ୍ତି । ଯେଉଁ ବଗିଚାରେ କେବଳ ଫୁଲଗଛଗୁଡ଼ିଏ ଥାଏ, ସେ ଫୁଲବଗିଚା । ଯେଉଁ ବଗିଚାରେ କେବଳ ପରିବାଗଛଗୁଡ଼ାଏ ଥାଏ, ସେ ପରିବାବଗିଚା । ଯେଉଁଠାରେ ଅନେକଗୁଡ଼ିଏ ବଡ଼ ବଡ଼ ଫଳଗଛ ଥାଏ, ତାକୁ ତୋଟା କହନ୍ତି । ବଡ଼ଲୋକମାନେ ଯେଉଁ ବଗିଚା କରିଥାନ୍ତି, ସେଥିରେ ଫୁଲଗଛ, ପରିବାଗଛ ଏବ ବଡ଼ ବଡ଼ ଫଳଗଛ ଏ ତିନିପ୍ରକାର ଥାଏ । ଏମାନଙ୍କୁ ଛାଡ଼ି ଆଉ କେତେଗୁଡ଼ିଏ ସାନ ସାନ ଗଛ ଥାଏ, ସେମାନଙ୍କ ପତ୍ରରେ ସୁବାସ ଅଛି । ଦୟଣା, ମରୁଆ ଓ ତୁଳସୀର ପତ୍ରର ଗନ୍ଧ ବଡ଼ ଭଲ । ଏହି ଜାତି କେତେଗୁଡ଼ିଏ ବିଦେଶୀ ଗଛ ବଗିଚାମାନଙ୍କରେ ଦେଖାଯାଏ । ସେମାନଙ୍କର ପତ୍ରରେ ମଧ୍ୟ ସୁଗନ୍ଧ ଅଛି । ଏକପ୍ରକାର ଘାସଗଛ ଅଛି,

ଦେଖିବାକୁ ବେଶ ସୁନ୍ଦର, ତାହାର ପତ୍ର ହାତରେ ଦଳିଲେ ଭଲ ବାସେ; ଏ ଗଛର ନାମ ଧନ୍ୱନ୍ତରୀ ।

ବଗିଚାର ଫୁଲଗଛମାନଙ୍କ ମଧ୍ୟରେ ମଲ୍ଲୀ, କୁନ୍ଦ, ଯୂଈ, କିଆଳୀ, ଗୋଲାପ, ସେବତୀ, ରଙ୍ଗଣୀ, ଗେଣ୍ଡୁ ପ୍ରଧାନ । ମାଲତୀ, ମାଧବୀ, ନାଗେଶ୍ୱର, କୁରଙ୍ଗନା ଏଗୁଡ଼ିକ ଭଲ ଫୁଲ । ମାତ୍ର ମାଲତୀ ଓ ମାଧବୀ ମାଡ଼ିବା ପାଇଁ ବହୁତ ସ୍ଥାନ ଲୋଡ଼ା ବୋଲି ସବୁ ବଗିଚାରେ ଏ ଦୁଇ ଗଛ ଦେଖାଯାଏ ନାହିଁ । ନାଗେଶ୍ୱରଫୁଲଠାରୁ ଭଲ ଫୁଲ ଅଛି କି ନାହିଁ, ମାତ୍ର ଯେକୌଣସି ସ୍ଥାନରେ ନାଗେଶ୍ୱର ଗଛ ବଞ୍ଚେ ନାହିଁ । କୁରଙ୍ଗନା ଗଛ ମଧ୍ୟ ଯେକୌଣସି ସ୍ଥାନରେ ବଞ୍ଚେ ନାହିଁ । ଚମ୍ପା ଓ କଦମ୍ବଫୁଲ ଦେଖିବାକୁ ସୁନ୍ଦର ହେଲେହେଁ, ସେମାନଙ୍କର ଗନ୍ଧରେ ରୋଗ ଜନ୍ମପାରେ ବୋଲି ଯେକୌଣସି ସ୍ଥାନରେ ଚମ୍ପା ଓ କଦମ୍ବ ଗଛ ଲଗାନ୍ତି ନାହିଁ । ଅଶୋକଗଛ ମଧ୍ୟ ନାଗେଶ୍ୱର ଓ କୁରଙ୍ଗନା ଗଛପରି ଅଳ୍ପ ଦେଖାଯାଏ । ବଡ଼ ବଡ଼ ଫଳଗଛମାନଙ୍କ ମଧ୍ୟରେ ଆମ୍ବ ପ୍ରଧାନ । ଏଣୁ ସବୁଠାରେ ସାନ ବଡ଼ ଅମ୍ବତୋଟା ଦେଖାଯାଏ । ବଗିଚାମାନଙ୍କରେ ପଣସ, ବେଲ, ଲିଚୁ, ଜାମୁ, ଗୋଲାପଜାମୁ ଓ ଡାଳିମ୍ବ ଗଛ ଥାଏ । ମାତ୍ର ଏମାନଙ୍କର ତୋଟା ଦେଖାଯାଏ ନାହିଁ । ଅନେକଗୁଡ଼ିଏ ତାଳଗଛ ଯେଉଁଠାରେ ଥାଏ, ତାକୁ ତାଳଗୁରେଇ, ତାଳବରେଇ ବା ତାଳବଣିଆ କହନ୍ତି ।

## ଆଳୁ ।

ଅମ୍ଭେମାନେ ଅନେକଗୁଡ଼ିଏ ଗଛର ଫଳ, ଫୁଲ ବା ପତ୍ର ଖାଉଁ, କେତେଗୁଡ଼ିଏ ଗଛର ମୂଳ ମଧ୍ୟ ଖାଉଁ । ସାରୁ, ଆଳୁ, କନ୍ଦମୂଳ ଏବଂ ଓଲୁଅ ମାଟିଭିତରେ ଥାଏ । ଏମାନଙ୍କ ମଧ୍ୟରେ ଆଳୁ ପ୍ରଧାନ । ଆଳୁ ଚାରି ପ୍ରକାର,—ଖମ୍ବଆଳୁ, ଗୋଲଆଳୁ, ରାମଆଳୁ ଓ ଚନଆଳୁ । ଗୋଲ-ଆଳୁକୁ ଲୋକେ ବିଲାତି ଆଳୁ ବୋଲି କହନ୍ତି । ଖମ୍ବଆଳୁର ଗଛ

ବଡ଼ ବଡ଼ ଲତା, ପତ୍ର ପାନପତ୍ର ଦିଶେ । ଏହି ଆଳୁକୁ ଖଣ୍ଡ ଖଣ୍ଡ କରି କାଟି ଲଗାଇଲେ ସେଥିରୁ ଗଜା ବାହାରି ଗଛ ହୁଏ । ଶୀତ କାଳରେ ପତ୍ର ପାଚିଯାଏ ଏବଂ ଗଛ ମରିଯାଏ । ଗଛ ହେଲେ ତାହାର ମୂଳରୁ ଆଳୁ ପଡ଼ିଯାଏ । ଗଛ ଯେତେକ ମରିଯାଉଥାଏ, ତାହା ମୂଳରୁ ସେତେକ ଆଳୁ ଫଳୁଥାଏ । ଏହିପରି ଯେଉଁ ଆଳୁ ଫଳନ୍ତି, ତାକୁ ନ ଖୋଳି ମାଟି ଭିତରେ ସେହିପରି ରଖିଲେ, ବର୍ଷାକାଳ ହେଲେ ସେଥିରୁ ଗଜା ବାହାରି ଗଛ ହେବ । ଏହି ଗଛ ବଢ଼ିଲେ ଏହାର ମୂଳରେ ଆଳୁଟି ମରିଯିବ ।



ପୁଣି ନୂଆ ଅଲୁଟିଏ ବାହାରିବ । ଏହିପରି ପ୍ରତିବର୍ଷ ଗଛ ମୂଳରେ ଗୋଟିଏ ଗୋଟିଏ ନୂଆ ଅଲୁ ହୁଏ । ପ୍ରତି ଅଲୁ ପୁରୁଣା ଅଲୁଠାରୁ କିଛି ବଡ଼ । ପାଞ୍ଚ ଛ ବର୍ଷ ଖୋଳା ନ ହେଲେ, ଆଲୁ ଦୁଇ ତିନ ହାତ ପର୍ଯ୍ୟନ୍ତ ଲମ୍ବ ହୁଏ, ଏବଂ ଖମ୍ବପରି ଦିଶେ । ଏହି ହେତୁରୁ ଏ ଅଲୁକୁ ଖମ୍ବଅଲୁ କହନ୍ତି । ଖମ୍ବଅଲୁ ଦୁଇ ପାଞ୍ଚ ଜାତି ଅଛି ।

ଗୋଲ ଆଲୁ ବା ବଲାଙ୍ଗି ଆଲୁର ଗଛ ସାନ । ଉପରେ ଯେଉଁ ଚିତ୍ର ଦିଆଯାଇଅଛି, ସେଥିରୁ ଜାଣିପାରିବ ସେ ଗଛ କିପରି ଦିଶେ । ଗୋଟା ଗୋଟା ବା ଖଣ୍ଡ ଖଣ୍ଡ ଅଲୁ, ଗଜା ବାହାରି ଆସିଲେ, ଭାଦ୍ର ବା ଆଶିନ ମାସରେ ଲଗାଯାଏ । କୌଣସି କୌଣସି ସ୍ଥାନରେ ଆହୁରି ଆଗରୁ ମଧ୍ୟ ଲଗାନ୍ତି । ଖମ୍ବଆଲୁଗଛ ପରି ଏ ଅଲୁର ଗଛ ମଧ୍ୟ ଶୀତ କାଳରେ ଜନ୍ମେ । ଶୀତକାଳ ଶେଷରେ ମରିଯାଏ । ଗଛ ଯେତିକି ମରୁ-ଥାଏ, ମୂଳରେ ଅଲୁ ସେତିକି ବଢୁଥାଏ । ଖମ୍ବଅଲୁର ଗୋଟିଏ ଗଛ ମୂଳରେ ଗୋଟିଏ ଅଲୁ ଫଳେ । ମାତ୍ର ବଲାଙ୍ଗି ଅଲୁର ଗୋଟିଏ ଗଛ ମୂଳରେ ଅନେକଗୁଡ଼ିଏ ଫଳେ । ଯେତେ ପ୍ରକାର ଅଲୁ ଅଛି, ସେ ସମସ୍ତଙ୍କ ମଧ୍ୟରେ ବଲାଙ୍ଗି ଅଲୁ ଖାଇବାକୁ ଅଧିକ ଭଲ ଲାଗେ, ଦେହକୁ ମଧ୍ୟ ଭଲ ।

ରାମଅଲୁର ଗଛ ଲତା କୁହେ, ଜଡ଼ାଗଛ ପରି ଠିଆହୋଇଥାଏ । ପତ୍ର ମଧ୍ୟ ଜଡ଼ାପତ୍ର ପରି ବା ଛତିଅନାପତ୍ର ପରି ଦିଶେ । ଗଛର ଯେଉଁ ଅଂଶ ମାଟି ଭିତରେ ଥାଏ, ତାହା ଅଲୁ । ଏ ଅଲୁର ଗଛ ଶୀତଦିନେ ମରିଯାଏ ନାହିଁ । ରାମଅଲୁ ଖମ୍ବଅଲୁଠାରୁ ଅଧିକ ମିଠା । ରାମଅଲୁକୁ ଗଣ୍ଡାଅଲୁ ବା ଶକରକନ୍ଦ ମଧ୍ୟ କହନ୍ତି ।

ଚିନାଅଲୁ ଧଳା କନ୍ଦମୂଳ ପରି ଦିଶେ । ତାହାର ଗଛ ଲତା, କନ୍ଦମୂଳ

ଗଛ ପର, ପଙ୍କ ମଧ୍ୟ ପ୍ରାୟ କନ୍ଦମୂଳପଙ୍କ ପର । ଏହ ଅଲୁ ସବୁଠାରୁ ମିଠା । ବାଳକ ବାଳକାମାନେ ଏହାକୁ କଞ୍ଚା ମଧ୍ୟ ଖାନ୍ତି ।

ଅନ୍ୟ ପରବା ଅଳ୍ପ ଦନ ରହିଲେ ପଚ ଅଥବା ଶୁଖି ନଷ୍ଟ ହୋଇ-ଯାଏ । ମାତ୍ର ସାରୁ ଓ କନ୍ଦମୂଳ ପର ଆଳୁ ଅନେକ ଦନଯାଏ ରହେ ।

## ରାଲେ ଓ ବଲାତୀ ଆଳୁ ।

ପ୍ରାୟ ତନଶତ ବର୍ଷ ହେଲା ଇଂରେଜମାନଙ୍କ ଦେଶରେ ଜଣେ ରାଣୀ ଥିଲେ, ତାଙ୍କ ନାମ ଏଲିଜାବେଥ୍ । ସେ ରାଣୀଙ୍କ ସମୟରେ ସେ ଦେଶର ଲୋକେ ସୁଖରେ ଥିଲେ । ସେ ଗୁଣ ଚହ୍ନି ଲୋକମାନଙ୍କୁ ଆଦର କରୁଥିଲେ, ଏବଂ ଭଲ କାର୍ଯ୍ୟ କରବା ପାଇଁ ଲୋକମାନଙ୍କୁ ଉତ୍ସାହ ଦେଉଥିଲେ ।

ସେ ସମୟରେ ଇଂରେଜମାନେ ଭଲ ଭଲ ପଦାର୍ଥ କଣି ନେବା-ପାଇଁ ବହୁତ ଟଙ୍କା ଘେନ ଜାହାଜରେ ଆମ୍ଭମାନଙ୍କ ଦେଶକୁ ଆସୁଥିଲେ । ସେମାନେ ଏହପର ଅନ୍ୟ ଦେଶକୁ ମଧ୍ୟ ଯାଉଥିଲେ । ଜଣେ ଜଣେ ସାହେବ ଜାହାଜରେ ଚଢ଼ି ଅନେକ ଦେଶ ବୁଲି ଦେଖି ଆସୁଥିଲେ ।

ଯାହାକୁ ଆମ୍ଭେମାନେ ବଲାତି ଅଲୁ କହୁଁ, ତାହା ସାହେବମାନଙ୍କ ଦେଶରୁ ଏ ଦେଶକୁ ଆସିଅଛି । ମାତ୍ର ପୂର୍ବେ ତାହା ସେମାନଙ୍କ ଦେଶରେ ମଧ୍ୟ ନ ଥିଲା । ଜାହାଜରେ ଚଢ଼ି ନାନା ଦେଶରେ ବୁଲୁଁ ବୁଲୁଁ ରାଲେ ନାମରେ ଜଣେ ସାହେବ ଏହ ଆଳୁକୁ ଅନ୍ୟ ଦେଶରେ ଦେଖି ଆପଣା ଦେଶକୁ ଘେନ ଆସିଲେ । ଏହା ଉତ୍ତମ ପଦାର୍ଥ ଦେଖି ତାଙ୍କ ଦେଶର ଲୋକେ ଏହାର ଚାଷ କଲେ; ଏବଂ ସମସ୍ତେ ଏହ ଅଲୁ ଖାଇଲେ ।

# ନଈ ବଢ଼ି ।

ବର୍ଷା ଉପରେ ବର୍ଷା ଅନେକ ଦିନ ହେବାରୁ ନଈରେ ଜଳ ଅଙ୍ଗ-ଠାରୁ ଅଧିକ ହେଲା । ନାଳଗୁଡ଼ିକ କ୍ରମେ ସବୁ ଲୁଚିଗଲା । ନଈରେ ଅତ୍ୟନ୍ତ ଅଧିକ ଜଳ ପଡ଼ିବାରୁ, ଏ କୂଳରୁ ସେ କୂଳ ଯାଏ ଭସା ହୋଇ-ଗଲା । କୂଳରେ ଯେଉଁଠାରେ ଖାଲ, ସେହି ବାଟେ ବଢ଼ିପାଣି ଉଛୁଳି ବିଲ ବାଡ଼ି ମାଡ଼ିଗଲା ।

ବଢ଼ିପାଣିର ରଙ୍ଗ ମାଟିଆ । କୌଣସି କୌଣସି ବିଲରେ ଧାନଗଛ ସବୁଯାକ ବୁଡ଼ିଗଲା । କୌଣସି କୌଣସି ବିଲରେ ଧାନଗଛର ପତ୍ର ପାଣିଉପରକୁ ଅଳ୍ପ ଅଳ୍ପ ଦିଶୁଥାଏ । ବଢ଼ିପାଣି ଦେହକୁ ବଡ଼ ଥଣ୍ଡା ଲାଗୁଥାଏ ।

ଦାଶରଥି ତାହାର ମାଆକୁ କହିଲା, "ମା ଆମ୍ଭର ବିଲଗୁଡ଼ିକ ବଢ଼ି-ପାଣିରେ ବୁଡ଼ିଗଲାଣି । ସେ ପାଣିରେ ମୋର ଲୁଗା ବଡ଼ ମଇଳା ହୋଇ-ଗଲା । ମୁଁ ସେଠାରୁ ବଡ଼ ଭାଇଙ୍କ ସଙ୍ଗରେ ନଈଘାଟକୁ ଗଲି । ବଢ଼ିରେ ବରଗଛର କୁଅଁଣିଆ ଡାଳର ଅଗ ବୁଡ଼ିଗଲାଣି । ଗୋଟିଏ ନେଉଳ ବଢ଼ିରେ ଭାସି ଆସୁଥିଲା । ବରଡାଳରେ ଲାଗିବାରୁ ସେ ସେଥିରେ ଅଟକି ଗଲା, ଟିକିଏ ଦମ୍ଭ ଧରି ସେ ଧୀରେ ଧୀରେ ଡାଳ ଉପରକୁ ଚଢ଼ି ଆସିଲା । କାରଣ ବୁଢ଼ା ତଳେ ଅନେକଗୁଡ଼ାଏ ମାଟି ଅଲଗା ହୋଇ ବଢ଼ିପାଣିରେ ପଡ଼ିଗଲାଣି । ବଢ଼ିରେ କେତେ କାଠ ଆଉ କେତେ ଡାଳ ଭାସି ଯାଉଅଛି । ପାଣି ବଡ଼ ଗୋଳିଆ ହେବାରୁ, ସେଥିରେ ମାଛଗୁଡ଼ିକ ଆଉ ଦିଶୁ ନାହାନ୍ତି । ସେ ପାଖରୁ ବରଘାଟକୁ ନାଆ ଆସିବାକୁ ବହୁତ ଉଛୁର ହେଉଅଛି । ଭାଇ କହୁଥିଲେ ସକାଳେ ଗୋଟାଏ ଜାଆନ୍ତା ମଇଁଷି ବଢ଼ିରେ ଭାସି ଯାଉଥିଲା ।"

# ପୁରୁଷୋତ୍ତମ ଦେବ ।

ପାଞ୍ଚଶ ବର୍ଷ ହେଲା ଓଡ଼ିଶାରେ ଜଣେ ରାଜା ଥିଲେ, ତାଙ୍କର ନାମ ପୁରୁଷୋତ୍ତମ ଦେବ । ସେତେବେଳେ ଓଡ଼ିଶା ଯେଡ଼ିକି, ଏବେ ଯେତେବେଳେ ତାହାଠାରୁ ବହୁତ ବଡ଼ ଥିଲା । ସେତେବେଳେ ଏ ଦେଶର ଲୋକେ ଲଢ଼ାଇ କରିବା ପାଇଁ ଅନ୍ୟ ଦେଶକୁ ଯାଉଥିଲେ । ଦକ୍ଷିଣରେ କାଞ୍ଚି ନାମରେ ଗୋଟିଏ ଦେଶ ଥିଲା । କାଞ୍ଚି ଦେଶର ରାଜା ଅପମାନ କର କୌଣସି କଥା କହିବାରୁ, ପୁରୁଷୋତ୍ତମ ଦେବ ତାଙ୍କ ସହିତ ଲଢ଼ିବା ପାଇଁ ଗଲେ । ମାତ୍ର ପ୍ରଥମ ଥର ସେ ହାରିଗଲେ । ଆଉ ଥରେ ଲଢ଼ିବା ପାଇଁ ସେ ପୁଣି କାଞ୍ଚି ଦେଶକୁ ଗଲେ, ଏବଂ କାଞ୍ଚିରାଜାଙ୍କୁ ଜିଣିଲେ ।

ରାଜାମାନେ ଲୋକମାନଙ୍କର ଗୁହାରି ଶୁଣିଲାବେଳେ ଏବଂ ଏହିପରି ଆଉ କାର୍ଯ୍ୟ କଲାବେଳେ ଯେଉଁ ଚୌକି ବା ପଲଙ୍କରେ ବସନ୍ତି ତାକୁ ସିଂହାସନ କହନ୍ତି । ପୁରୁଷୋତ୍ତମ ଦେବ ସିଂହାସନରେ ବସୁ ନ ଥିଲେ । ସେ କହୁଥିଲେ, ସିଂହାସନ ଈଶ୍ୱରଙ୍କର, ସେଥିରେ ମନୁଷ୍ୟର ବସିବା ଭଲ ନୁହେଁ । ଏହା ମନେ କରି ସେ ସିଂହାସନରେ ନ ବସି, ତାହା ନିକଟରେ ତଳେ ବସି, ଲୋକମାନଙ୍କର ଗୁହାରି ଶୁଣୁଥିଲେ, ଏବଂ ଆଉ କାର୍ଯ୍ୟମାନ କରୁଥିଲେ ।

ପୁରୁଷୋତ୍ତମ ଦେବଙ୍କର ଅନେକଗୁଡ଼ିଏ ଭାଇ ଥିଲେ । ସେମାନେ ତାଙ୍କଠାରୁ ରାଜ୍ୟ ଛଡ଼ାଇ ନେବା ପାଇଁ ଲାଗିଲେ । ମାତ୍ର ଲଢ଼ାଇରେ ଜିଣି ନ ପାରିବାରୁ, ସେମାନେ ରାଜ୍ୟ ନେଇ ପାରିଲେ ନାହିଁ । ସେମାନଙ୍କ ମଧ୍ୟରୁ କାହାରି କାହାରିକି ପୁରୁଷୋତ୍ତମ କଠିନ ଦଣ୍ଡ ଦେଲେ ।

ପୁରୁଷୋତ୍ତମ ଦେବଙ୍କର କ୍ରୋଧ ଥିଲା । ମାତ୍ର କ୍ରୋଧର ସମୟ ଗଡ଼ି ଗଲା ଉତ୍ତାରୁ ଭଲ କରି ବୁଝାଇ ଦେଲେ, ସେ ବୁଝି ଯାଉଥିଲେ ।



# ହରିଣୀର ଉଦ୍ଧାର ।

ଥରେ କୌଣସି ପ୍ରକାରେ ବଣରେ ନିଆଁ ଲାଗିଲା । ତାହା ଦେଖି ଗୋଟିଏ ହରିଣୀ, ଯେଉଁ ଆଡ଼କୁ ନିଆଁ ଚରି ଯାଇ ନାହିଁ, ସେହି ଆଡ଼କୁ ପଳାଇ ଗଲା । କିଛି ଦୂର ଯାଇ ସେ ଦେଖିଲା, ଜଣେ ବାଘୁଆ ତାକୁ ଧରିବା ପାଇଁ ବସିଅଛି । ହରିଣୀ କୌଣସି ଆଡ଼କୁ ନ ଯାଇ ସେହିଠାରେ ଠିଆ ହେଲା । ଆଗକୁ ଗଲେ ବାଘୁଆ ଧରିବ, ପଛକୁ ଫେରିଲେ ନିଆଁ ପୋଡ଼ି ପକାଇବ, ଏହା ଭାବି ବଡ଼ କାତର ହୋଇ ହରିଣୀ ମନେ ମନେ ଈଶ୍ୱରଙ୍କୁ ଡାକିଲା ।

ଅଳ୍ପକ୍ଷଣ ମଧ୍ୟରେ ମେଘ ଘୋଟି ଗର୍ଜ୍ଜନ କଲା, ଏବଂ ବଡ଼ ବର୍ଷା ହେଲା । ବର୍ଷା ଦେଖି ତରତର ହୋଇ ବାଘୁଆ ଆପଣା ଘରକୁ ପଳାଇ

ଗଲା । ତେଣେ ନର୍ଥ ଆଉ ଡର ପାଇଲା ନାହିଁ । ଏହିପରି ହରଣୀଟି ଉଦ୍ଧାର ପାଇଲା ।

ଈଶ୍ୱର ସମସ୍ତଙ୍କର ପିତା । ଯେ ତାହାଙ୍କୁ ଡାକେ, ସେ ତାହା କଥା ଶୁଣନ୍ତି । ମନୁଷ୍ୟ ଡାକିଲେ ସେ ଯେପରି ଶୁଣନ୍ତି, ଜନା ପିମ୍ପୁଡ଼ି, ହାତୀ ଘୋଡ଼ା, ବାଘ ହରିଣ ଡାକିଲେ ମଧ୍ୟ ସେ ସେହିପରି ଶୁଣନ୍ତି ।

## ପବନ ।

ମୋତେ ନୟନରେ      କେହି ଦେଖି ନାହିଁ,
ଅଛି ମୁହିଁ ସବୁଠାରେ
ସମସ୍ତଙ୍କୁ ଛୁଇଁ      ପଳାଇ ଯାଏଁ ମୁଁ,
କିଏ ମୋତେ ଧରି ପାରେ ?
ଦୋହଲାଇ ନଦୀ——ସମୁଦ୍ରର ଜଳ,
ତରୁ ଲତା ପୁଷ୍ପ ଫଳ,
ଆକାଶରେ ମେଘ——ମାଳକୁ ଚଳାଇ,
ବୁଲଇଁ ମୁହିଁ ଚଞ୍ଚଳ ।
ମହାବେଗେ ଯେବେ      ବୁଲଇଁ ଜଗତେ,
ଭାଙ୍ଗିଯାଏ ଘର ଦ୍ୱାର ।
ଉପୁଡ଼ି ପଡ଼ଇ      ବଡ଼ ବଡ଼ ବୃକ୍ଷ,
ପଡ଼ିଯାଏ ହାହାକାର ।
ମୋ ବିନା ବଞ୍ଚିବ      କିଏ ଏ ଜଗତେ
ମୁଁ ତ ଜୀବର ଜୀବନ,
ମୋ ନାମ କହ ହେ      ବାଳକ ବାଳିକା !
ଅରେ ପବନ ପବନ ।

ସମ୍ପ୍ ଶ୍ରୀଯୁକ୍ତ ମଧୁସୂଦନ ରାଓ ବାହାଦୁର ।

ପୁଣି ନୂଆ ଅଳୁଟିଏ ବାହାରିବ । ଏହିପରି ପ୍ରତିବର୍ଷ ଗଛ ମୂଳରେ ଗୋଟିଏ ଗୋଟିଏ ନୂଆ ଆଳୁ ହୁଏ । ପ୍ରତି ଅଳୁ ପୁରୁଣା ଅଳୁଠାରୁ କିଛି ବଡ଼ । ପାଞ୍ଚ ଛ ବର୍ଷ ଖୋଳା ନ ହେଲେ, ଅଳୁ ଦୁଇ ତିନି ହାତ ପର୍ଯ୍ୟନ୍ତ ଲମ୍ବ ହୁଏ, ଏବଂ ଖମ୍ବପରି ଦିଶେ । ଏହି ହେତୁରୁ ଏ ଅଳୁକୁ ଖମ୍ବଅଳୁ କହନ୍ତି । ଖମ୍ବଅଳୁ ଚାରି ପାଞ୍ଚ ଜାତି ଅଛି ।

ଗୋଲ ଅଳୁ ବା ବଲାଙ୍ଗି ଅଳୁର ଗଛ ସାନ । ଉପରେ ଯେଉଁ ଚିତ୍ର ଦିଆଯାଇଅଛି, ସେଥିରୁ ଜାଣିପାରିବ ସେ ଗଛ କପରି ଦିଶେ । ଗୋଟା ଗୋଟା ବା ଖଣ୍ଡ ଖଣ୍ଡ ଅଳୁ, ଗଜା ବାହାରି ଆସିଲେ, ଭାଦ୍ର ବା ଅଶ୍ୱିନ ମାସରେ ଲଗାଯାଏ । କୌଣସି କୌଣସି ସ୍ଥାନରେ ଆହୁରି ଆଗରୁ ମଧ୍ୟ ଲଗାନ୍ତି । ଖମ୍ବଅଳୁଗଛ ପରି ଏ ଅଳୁର ଗଛ ମଧ୍ୟ ଶୀତ କାଳରେ ଜନ୍ମେ । ଶୀତକାଳ ଶେଷରେ ମରିଯାଏ । ଗଛ ଯେତିକି ମରୁ-ଥାଏ, ମୂଳରେ ଅଳୁ ସେତିକି ବଢୁଥାଏ । ଖମ୍ବଅଳୁର ଗୋଟିଏ ଗଛ ମୂଳରେ ଗୋଟିଏ ଅଳୁ ଫଳେ । ମାତ୍ର ବଲାଙ୍ଗି ଅଳୁର ଗୋଟିଏ ଗଛ ମୂଳରେ ଅନେକଗୁଡ଼ିଏ ଫଳେ । ଯେତେ ପ୍ରକାର ଅଳୁ ଅଛି, ସେ ସମସ୍ତଙ୍କ ମଧ୍ୟରେ ବଲାଙ୍ଗି ଅଳୁ ଖାଇବାକୁ ଅଧିକ ଭଲ ଲାଗେ, ଦେହକୁ ମଧ୍ୟ ଭଲ ।

ରାମଅଳୁର ଗଛ ଲତା ନୁହେ, ଜଡ଼ାଗଛ ପରି ଠିଆହୋଇଥାଏ । ପତ୍ର ମଧ୍ୟ ଜଡ଼ାପତ୍ର ପରି ବା ଛତିଆଳାପତ୍ର ପରି ଦିଶେ । ଗଛର ଯେଉଁ ଅଂଶ ମାଟି ଭିତରେ ଥାଏ, ତାହା ଅଳୁ । ଏ ଅଳୁର ଗଛ ଶୀତଦିନେ ମରିଯାଏ ନାହିଁ । ରାମଅଳୁ ଖମ୍ବଅଳୁଠାରୁ ଅଧିକ ମିଠା । ରାମଅଳୁକୁ ଗଣ୍ଡାଅଳୁ ବା ଶକରକନ୍ଦ ମଧ୍ୟ କହନ୍ତି ।

ଚିନାଅଳୁ ଧଳା କନ୍ଦମୂଳ ପରି ଦିଶେ । ତାହାର ଗଛ ଲତା, କନ୍ଦମୂଳ

ଗଛ ପରି, ପତ୍ର ମଧ୍ୟ ପ୍ରାୟ କନ୍ଦମୂଳପତ୍ର ପରି । ଏହି ଆଳୁ ସ୍ୱାଦୁଠାରୁ ମିଠା । ବାଳକ ବାଳିକାମାନେ ଏହାକୁ କଞ୍ଚା ମଧ୍ୟ ଖାନ୍ତି ।

ଅନ୍ୟ ପରିବା ଅଳ୍ପ ଦିନ ରହିଲେ ପଚି ଅଥବା ଶୁଖି ନଷ୍ଟ ହୋଇ-ଯାଏ । ମାତ୍ର ସାରୁ ଓ କନ୍ଦମୂଳ ପରି ଆଳୁ ଅନେକ ଦିନଯାଏ ରହେ ।

## ରାଲେ ଓ ବିଲାତି ଆଳୁ ।

ପ୍ରାୟ ତିନିଶତ ବର୍ଷ ହେଲା ଇଂରେଜମାନଙ୍କ ଦେଶରେ ଜଣେ ରାଣୀ ଥିଲେ, ତାଙ୍କ ନାମ ଏଲିଜାବେଥ୍ । ସେ ରାଣୀଙ୍କ ସମୟରେ ସେ ଦେଶର ଲୋକେ ସୁଖରେ ଥିଲେ । ସେ ଗୁଣ ଚିହ୍ନି ଲୋକମାନଙ୍କୁ ଆଦର କରୁଥିଲେ, ଏବ ଭଲ କାର୍ଯ୍ୟ କରିବା ପାଇଁ ଲୋକମାନଙ୍କୁ ଉତ୍ସାହ ଦେଉଥିଲେ ।

ସେ ସମୟରେ ଇଂରେଜମାନେ ଭଲ ଭଲ ପଦାର୍ଥ କିଣି ନେବା-ପାଇଁ ବହୁତ ଟଙ୍କା ଘେନି ଜାହାଜରେ ଆମ୍ଭମାନଙ୍କ ଦେଶକୁ ଆସୁଥିଲେ । ସେମାନେ ଏହିପରି ଅନ୍ୟ ଦେଶକୁ ମଧ୍ୟ ଯାଉଥିଲେ । ଜଣେ ଜଣେ ସାହେବ ଜାହାଜରେ ଚଢ଼ି ଅନେକ ଦେଶ ବୁଲି ଦେଖି ଆସୁଥିଲେ ।

ଯାହାକୁ ଆମ୍ଭେମାନେ ବିଲାତି ଆଳୁ କହୁଁ, ତାହା ସାହେବମାନଙ୍କ ଦେଶରୁ ଏ ଦେଶକୁ ଆସିଅଛି । ମାତ୍ର ପୂର୍ବେ ତାହା ସେମାନଙ୍କ ଦେଶରେ ମଧ୍ୟ ନ ଥିଲା । ଜାହାଜରେ ଚଢ଼ି ନାନା ଦେଶରେ ବୁଲୁଁ ବୁଲୁଁ ରାଲେ ନାମରେ ଜଣେ ସାହେବ ଏହି ଆଳୁକୁ ଅନ୍ୟ ଦେଶରେ ଦେଖି ଆପଣା ଦେଶକୁ ଘେନି ଆସିଲେ । ଏହା ଉତ୍ତମ ପଦାର୍ଥ ଦେଖି ତାଙ୍କ ଦେଶର ଲୋକେ ଏହାର ଚାଷ କଲେ; ଏବ ସମସ୍ତେ ଏହି ଆଳୁ ଖାଇଲେ ।

# ନଈ ବଢ଼ି ।

ବର୍ଷା ଉପରେ ବର୍ଷା ଅନେକ ଦିନ ହେବାରୁ ନଈରେ ଜଳ ଅନ୍ୟଠାରୁ ଅଧିକ ହେଲା । ବାଲିଗୁଡ଼ିକ କ୍ରମେ ସବୁ ଲୁଚିଗଲା । ନଈରେ ଅତିଶୟ ଅଧିକ ଜଳ ପଡ଼ିବାରୁ, ଏ କୂଳରୁ ସେ କୂଳ ଯାଏ ଭର୍ତ୍ତି ହୋଇଗଲା । କୂଳରେ ଯେଉଁଠାରେ ଖାଲ, ସେହି ବାଟେ ବଢ଼ିପାଣି ଭିତର ବିଲ ବାଡ଼ି ମାଡ଼ିଗଲା ।

ବଢ଼ିପାଣିର ରଙ୍ଗ ମାଟିଆ । କୌଣସି କୌଣସି ବିଲରେ ଧାନଗଛ ସବୁଯାକ ବୁଡ଼ିଗଲା । କୌଣସି କୌଣସି ବିଲରେ ଧାନଗଛର ପତ୍ର ପାଣିଉପରକୁ ଅଳ୍ପ ଅଳ୍ପ ଦିଶୁଥାଏ । ବଢ଼ିପାଣି ଦେଖିଲେ ବଡ଼ ଅଶ୍ରା ଲାଗୁଥାଏ ।

ଦାଶରଥି ତାହାର ମାଆକୁ କହିଲା, "ମା ଆମ୍ଭର ବିଲଗୁଡ଼ିକ ବଢ଼ିପାଣିରେ ବୁଡ଼ିଗଲାଣି । ସେ ପାଣିରେ ମୋର ଲୁଗା ବଡ଼ ମଇଲା ହୋଇଗଲା । ମୁଁ ସେଠାରୁ ବଡ଼ ଭାଇଙ୍କ ସଙ୍ଗରେ ନଈଘାଟକୁ ଗଲି । ବଢ଼ିରେ ବରଗଛର କୁଆଁଣିଆ ଡାଳର ଅଗ ବୁଡ଼ିଗଲାଣି । ଗୋଟିଏ ନେଉଳ ବଢ଼ିରେ ଭାସି ଆସୁଥିଲା । ବରଡାଳରେ ଲାଗିବାରୁ ସେ ସେଥିରେ ଅଟକି ଗଲା, ଟିକିଏ ଦମ୍ଭ ଧରି ସେ ଧୀରେ ଧୀରେ ଡାଳ ଉପରକୁ ଚଢ଼ି ଅସିଲା । ବାଉଁଶ ବୁଦା ତଳେ ଅନେକଗୁଡ଼ାଏ ମାଟି ଅଲଗା ହୋଇ ବଢ଼ିପାଣିରେ ପଡ଼ିଗଲାଣି । ବଢ଼ିରେ କେତେ କାଠ ଆଉ କେତେ ଡାଳ ଭାସି ଯାଉଅଛି । ପାଣି ବଡ଼ ଗୋଳିଆ ହେବାରୁ, ସେଥିରେ ମାଛଗୁଡ଼ିକ ଆଉ ଦିଶୁ ନାହାନ୍ତି । ସେ ପାଖରୁ ବରଘାଟକୁ ନାଆ ଅସିବାକୁ ବହୁତ ଡେରି ହେଉଅଛି । ଭାଇ କହୁଥିଲେ ସକାଳେ ଗୋଟାଏ ଗାଈଆଣ୍ଡା ମଇଁଷି ବଢ଼ିରେ ଭାସି ଯାଉଥିଲା ।"

# ପୁରୁଷୋତ୍ତମ ଦେବ ।

ପାଞ୍ଚଶ ବର୍ଷ ହେଲା ଓଡ଼ିଶାରେ ଜଣେ ରାଜା ଥିଲେ, ତାଙ୍କର ନାମ ପୁରୁଷୋତ୍ତମ ଦେବ । ଆଜକାଲି ଓଡ଼ିଶା ଯେତିକି, ସେତେବେଳେ ତାହାଠାରୁ ବହୁତ ବଡ଼ ଥିଲା । ସେତେବେଳେ ଏ ଦେଶର ଲୋକେ ଲଢ଼ାଇ କରିବା ପାଇଁ ଅନ୍ୟ ଦେଶକୁ ଯାଉଥିଲେ । ଦକ୍ଷିଣରେ କାଞ୍ଚି ନାମରେ ଗୋଟିଏ ଦେଶ ଥିଲା । କାଞ୍ଚି ଦେଶର ରାଜା ଅପମାନ କରି କୌଣସି କଥା କହିବାରୁ, ପୁରୁଷୋତ୍ତମ ଦେବ ତାଙ୍କ ସହିତ ଲଢ଼ିବା ପାଇଁ ଗଲେ । ମାତ୍ର ପ୍ରଥମ ଥର ସେ ହାରିଗଲେ । ଆଉ ଥରେ ଲଢ଼ିବା ପାଇଁ ସେ ପୁଣି କାଞ୍ଚି ଦେଶକୁ ଗଲେ, ଏବଂ କାଞ୍ଚିରାଜାଙ୍କୁ ଜିଣିଲେ ।

ରାଜାମାନେ ଲୋକମାନଙ୍କର ଗୁହାରି ଶୁଣିଲାବେଳେ ଏବଂ ଏହିପରି ଆଉ କାର୍ଯ୍ୟ କଲାବେଳେ ଯେଉଁ ଚୌକି ବା ପଲଙ୍କରେ ବସନ୍ତି ତାକୁ ସିଂହାସନ କହନ୍ତି । ପୁରୁଷୋତ୍ତମ ଦେବ ସିଂହାସନରେ ବସୁ ନ ଥିଲେ । ସେ କହୁଥିଲେ, ସିଂହାସନ ଈଶ୍ୱରଙ୍କର, ସେଥିରେ ମନୁଷ୍ୟର ବସିବା ଭଲ ନୁହେ । ଏହା ମନେ କରି ସେ ସିଂହାସନରେ ନ ବସି, ତାହା ନିକଟରେ ତଳେ ବସି, ଲୋକମାନଙ୍କର ଗୁହାରି ଶୁଣୁଥିଲେ, ଏବଂ ଆଉ କାର୍ଯ୍ୟମାନ କରୁଥିଲେ ।

ପୁରୁଷୋତ୍ତମ ଦେବଙ୍କର ଅନେକଗୁଡ଼ିଏ ଭାଇ ଥିଲେ । ସେମାନେ ତାଙ୍କଠାରୁ ରାଜ୍ୟ ଛଡ଼ାଇ ନେବା ପାଇଁ ଲାଗିଲେ । ମାତ୍ର ଲଢ଼ାଇରେ ଜିଣି ନ ପାରିବାରୁ, ସେମାନେ ରାଜ୍ୟ ନେଇ ପାରିଲେ ନାହିଁ । ସେମାନଙ୍କ ମଧ୍ୟରୁ କାହାରି କାହାରିକି ପୁରୁଷୋତ୍ତମ କଠିନ ଦଣ୍ଡ ଦେଲେ ।

ପୁରୁଷୋତ୍ତମ ଦେବଙ୍କର କ୍ରୋଧ ଥିଲା । ମାତ୍ର କ୍ରୋଧର ସମୟ ଗଡ଼ି ଗଲା ଉତ୍ତାରୁ ଭଲ କରି ବୁଝାଇ ଦେଲେ, ସେ ବୁଝି ଯାଉଥିଲେ ।



## ଲୁଗା ।

କପା ଗଛ ବୋଲି ଏକ ଜାତି ଗଛ ଅଛି । ତାହାର ଫୁଲ ଅଳ୍ପ ହଳଦିଆ ବରଣ । ସେ ଗଛର ଫଳ ଗୁଆଠାରୁ ବଡ଼, ଆମ୍ବଠାରୁ ସାନ । ଫଳର ଚୋପା ପତଳା । ଫଳ ପାକଲ ହେଲେ ଫାଟିଯାଏ । ତାହା ଭିତରୁ ତୁଳା ବାହାରେ । ତୁଳାକୁ ଭଣିଦେଲେ, ତାହା ସଫା ଓ ହାଲୁକା ହୁଏ । ଭଣା ତୁଳାରୁ ଅରଟରେ ବା କଳରେ ସୂତା କାଟନ୍ତି । ଶରକାଠି ସାନ ସାନ ଖଣ୍ଡ କରି ସେଥିରେ ସୂତା ଗୁଡ଼ାଇ ରଖନ୍ତି । ଏହାକୁ କଣ୍ଡା କହନ୍ତି । ଏହିପରି ଅନେକଗୁଡ଼ିଏ କଣ୍ଡା ହେଲେ ସୂତା-ଗୁଡ଼ିକ ଲମ୍ବ ଲମ୍ବ କରି ସଜାଡ଼ି ମୋଟ କାଠ ଖଣ୍ଡରେ ଗୁଡ଼ାଇ ତନ୍ତରେ ଦେଇ ତନ୍ତମାନେ ଲୁଗା ବୁଣନ୍ତି । ଲମ୍ବ ଲମ୍ବ ଗୁଡ଼ା ହୋଇଥିବା ସୂତା-

ମାନଙ୍କୁ ଦୂର ଫାଙ୍କ କରଇ, ଡାହାଣ ହାତରେ ବାମକୁ ଏବଂ ବାମ ହାତରେ ଡାହାଣକୁ କଣ୍ଡା ଫିଙ୍ଗି ତନ୍ତ୍ରମାନେ ସୂତାରେ ସୂତା ଛନ୍ଦି ପକାନ୍ତି । ସୂତାଗୁଡ଼ିକ ପାଖେ ପାଖେ ଛଡ଼ିଯାଏ । ଚକ୍କଣ କରିବା-ପାଇଁ ତନ୍ତ୍ରମାନେ ବୁଣିବାବେଳେ ଲୁଗାରେ ମଣ୍ଡ ଦିଅନ୍ତି । ଏହିପରି ଲୁଗା ବୁଣାହେଲେ ଅମ୍ଭେମାନେ ତାହା ପିନ୍ଧୁଁ । ଏ ଦେଶରେ ତନ୍ତ୍ର-ମାନେ ପୂର୍ବେ ହାତରେ ଲୁଗା ବୁଣୁଥିଲେ । ସାହେବମାନଙ୍କ ଦେଶରେ ଅନେକଗୁଡ଼ିଏ କଲ ତନ୍ତ ଅଛି । ଏ ଦେଶରେ ମଧ୍ୟ କେତେଗୁଡ଼ିଏ କଲ ତନ୍ତ ବସିଲଣି । ହାତରେ ଖଣ୍ଡିଏ ଲୁଗା ବୁଣିଲେ ବହୁତ ସମୟ ଲାଗେ । କଲରେ ଅଳ୍ପ ସମୟରେ ଲୁଗା ବୁଣାହୁଏ । ହାତବୁଣା ଲୁଗା ଖଣ୍ଡିକର ମୂଲ୍ୟ ଯେତେ ହୁଏ, କଲ-ବୁଣା ଲୁଗାର ମୂଲ୍ୟ ତାହାଠାରୁ ଊଣା । ଏଥିପାଇଁ ଲୋକେ କଲବୁଣା ଲୁଗା ବହୁତ ପିନ୍ଧନ୍ତି ।

କପା ସୂତାରେ ଯେପରି ଲୁଗା ବୁଣାହୁଏ, ତସର ଓ ରେସମ ସୂତାରେ ମଧ୍ୟ ସେହିପରି ଲୁଗା ବୁଣାହୁଏ । ତସର-ସୂତାରେ ବୁଣା ଲୁଗାକୁ ତସର ବା ମଠା କହନ୍ତି । ରେସମ-ସୂତାରେ ବୁଣା ଲୁଗାକୁ ପାଟଲୁଗା କହନ୍ତି । ଏ ଲୁଗାମାନଙ୍କର ମୂଲ୍ୟ ସୂତାଲୁଗା ମୂଲ୍ୟଠାରୁ ଅଧିକ ହୁଏ । ମଠା ଓ ପାଟ ଦେଖିବାକୁ ଅଧିକ ସୁନ୍ଦର ।

ଦେହରେ ସବୁବେଳେ ଲୁଗା ଥିଲେ, ମଳ ଧୂଳ ଲାଗିପାରେ ନାହିଁ, ଏବଂ ଗରମ ଓ ଥଣ୍ଡା ବାଧେ ନାହିଁ । ଯେଉଁ ବାଳକ-ବାଳିକାମାନେ ଦେହରେ ଭଲକରି ଲୁଗା ଦିଅନ୍ତି ନାହିଁ, ସେମାନଙ୍କ ଦେହରେ ମଳ ବସେ ଏବଂ ଦେହ ଅସୁନ୍ଦର ଦିଶେ । ଦେହରେ ମଳ ବସିଲେ ନାନା ରୋଗ ଜନ୍ମିପାରେ । ପିନ୍ଧିବା ଲୁଗାକୁ ସବୁବେଳେ ସଫା ରଖିବା ଉଚିତ । ଯେ ଭଲ ଲୁଗା ନ ପିନ୍ଧି ବାହାରକୁ ବାହାରେ, ଲୋକେ ତାକୁ ଘୃଣା କରନ୍ତି । ଲୁଗାକୁ ବସ୍ତ୍ର ମଧ୍ୟ କହନ୍ତି ।

## କାଗଜ ।

ଘାସ ଓ ଛିଣ୍ଡା ଲୁଗା କୁଟି ଗୁଣ୍ଡ କରି ଜଳରେ ଭିଜାଇଦେଲେ, ରହି ରହି ତାହା ଯାଉପରି ହୋଇଯାଏ । ଏହି ମଣ୍ଡକୁ ସମତଳ ସ୍ଥାନରେ ମେଲାଇ, ଗୋଟିଏ ଚକ୍କଣ ଓ ନଳୀପରି ଗୋଲ ପଦାର୍ଥ ତାହା ଉପରେ ଗଡ଼ାଇ ଦିଅନ୍ତି । ଏହା ଉତ୍ତାରେ ତାକୁ ଗୋଟାଏ ଗୋଟାଏ ମାପରେ ଖଣ୍ଡ ଖଣ୍ଡ କରି କାଟି ଶୁଖାଇ ଦିଅନ୍ତି । ଶୁଖିଗଲେ ତାହା କାଗଜ ହୁଏ । ଖଣ୍ଡିଏ ଖଣ୍ଡିଏ କାଗଜକୁ ମଝିରୁ ଭାଙ୍ଗି, ଖଣ୍ଡିକ ମଧ୍ୟରେ ଆଉ ଖଣ୍ଡିଏ ଏପରି ଚବଶ ଖଣ୍ଡ ପର୍ଯ୍ୟନ୍ତ ରଖି, ଗୋଟାଏ ଗୋଟାଏ ଦସ୍ତା କରନ୍ତି । କାଗଜ ଦସ୍ତା ଦସ୍ତା ହୋଇ ଦୋକାନମାନଙ୍କରେ ବିକ୍ରୀ ହେବାପାଇଁ ଜମା ହୋଇଥାଏ । ମୋଟା ସରୁ ନାନାପ୍ରକାର କାଗଜ ଅଛି । କୌଣସି କୌଣସି କାଗଜ ଏତେ ମୋଟ ଯେ ବାଳକମାନେ ତାହାକୁ ନୁଆଁଇ ସହଜେ ଭାଙ୍ଗି ବା ଛିଣ୍ଡାଇ ପାରିବେ ନାହିଁ । ମଣ୍ଡରେ ଅନ୍ୟ ପଦାର୍ଥ ମିଶାଇ, ନୀଳ, ହଳଦିଆ ପ୍ରଭୃତି ନାନା ବର୍ଣ୍ଣର କାଗଜ କରାଯାଏ ।

କାଗଜରେ ଅନେକ କାର୍ଯ୍ୟ ହୁଏ । ବାଳକ ବାଳିକାମାନେ ଏବଂ ବଡ଼ ମନୁଷ୍ୟମାନେ କାଗଜରେ ଚିଠି ଲେଖନ୍ତି, ହିସାବ ଲେଖନ୍ତି, ଛବି ଆଙ୍କନ୍ତି ଏବଂ ଆହୁରି କେତେ ପ୍ରକାର ଲେଖନ୍ତି । କାଗଜରେ ଛପା ହେଲେ ବହି ହୁଏ । ଖବର କାଗଜ ମଧ୍ୟ ଛପା ହୋଇଥାଏ । ବହି ଓ ଖବର କାଗଜ ଛଡ଼ା ଆହୁରି କେତେ ପ୍ରକାର ଛପା କାଗଜରେ ହୁଏ । ବହିକୁ ପୁସ୍ତକ ମଧ୍ୟ କହନ୍ତି । ଲେଖିବାପାଇଁ କାଗଜ ସଙ୍ଗକୁ ପେନ୍‌ସିଲ୍ ଅଥବା କଲମ ଓ କାଳୀ ଆବଶ୍ୟକ ହୁଏ । ଏକ ପ୍ରକାର କାଗଜ ଅଛି, କାଳୀରେ ଲେଖି ତାହା ଉପରେ ସେ କାଗଜ ରଖି ମାଡ଼ିଦେଲେ, ଅଧିକା କାଳୀ ସେଥିରେ ଶୋଷିହୋଇଯାଏ । ଏପ୍ରକାର କାଗଜକୁ ଛପା

କାଗଜ ବା ଛପା କାଗଜ କହନ୍ତି । ବାଳକ ବାଳିକାମାନେ ହସ୍ତାକ୍ଷର ଲେଖିଲାବେଳେ ଏଥିରୁ ଖଣ୍ଡିଏ ଖଣ୍ଡିଏ ପାଖରେ ରଖିଥାନ୍ତି ।

ଚୀନଦେଶ ବୋଲି ଗୋଟିଏ ଦେଶ ଅଛି, ସେଠାରେ କାରିଗରମାନେ ନୀଲ, ହଳଦିଆ ପ୍ରଭୃତି ନାନା ବର୍ଣ୍ଣର କାଗଜରେ ସୁନ୍ଦର ସୁନ୍ଦର ଗୋଲ ଲଣ୍ଠନ ତିଆରି କରନ୍ତି । ତାହା ମଧ୍ୟରେ ଆଲୁଅ ଜାଳିଲେ ଘରରେ ବଡ଼ ସୁନ୍ଦର ଦିଶେ । ସେ ଦେଶର କାରିଗରମାନେ କାଗଜରେ ଛତା ତିଆରି କରନ୍ତି । ଲୁଗା ଛତାଠାରୁ କାଗଜ ଛତା ଅଧିକ ହାଲୁକା ଓ ଶସ୍ତା ହୁଏ । ଗୋଟିଏ ଲୁଗାଛତାର ମୂଲ୍ୟରେ ତିନୋଟି କାଗଜ ଛତା କିଣାଯାଇ ପାରେ । ବଡ଼ ବର୍ଷାରେ ମଧ୍ୟ ସେହି କାଗଜ ଛତାରେ ଜଳ ଭେଦିପାରେ ନାହିଁ । କାଗଜରେ ଚିଠି ଲଫାଫା ତିଆରି ହୁଏ । ବାଳକ-ମାନଙ୍କ ଗୁଡ଼ି ବା ଚଙ୍ଗ ସେଥିରେ ତିଆରି ହୁଏ । କେହି କେହି ସେଥିରେ ପଙ୍ଖା ତିଆରି କରନ୍ତି । କାଗଜରେ ଲୋକେ ମଞ୍ଜି ରଖନ୍ତି, ଗୁଣ୍ଡ ଔଷଧ ରଖନ୍ତି, ଏବଂ ବଣିଆମାନେ ସେଥିରେ ମସଲା ପୁଡ଼ିଆ କରନ୍ତି ।

ଆଜିକାଲି କଳରେ କାଗଜ ତିଆରି ହେଉଅଛି । ପୂର୍ବକାଳରେ ଯେତେବେଳେ କଳ ନ ଥିଲା, ସେତେବେଳେ ବହୁତ ଶ୍ରମ କରି ଲୋକେ କାଗଜ ତିଆରି କରୁଥିଲେ ।

## ଶ୍ୟାମାନନ୍ଦ ଦେ ।

ବାଲେଶ୍ୱର ସହରରେ ଶ୍ୟାମାନନ୍ଦ ଦେ ନାମରେ ଜଣେ ଜମିଦାର ଥିଲେ । ସେ ଲୁଣ ଓ ଚାଉଳର ମହାଜନ ମଧ୍ୟ କରି ଅନେକ ଟଙ୍କା ଲାଭ ପାଉଥିଲେ । ମାତ୍ର ସେ ଆପଣା ଖାଇବାରେ ବା ପିନ୍ଧିବାରେ ଅଧିକ ଖରଚ କରୁ ନ ଥିଲେ । ସେ ଯେଉଁ ଲୁଗା ଯୋଡ଼ିଏ ପିନ୍ଧୁଥିଲେ, ତାହା ତାଙ୍କ ଦେହରେ ଦେଖିଲେ କ ଚହିଲା ଲୋକେ ଭାବନ୍ତି



ବଡ଼ ଲୋକ ବୋଲି ଜାଣି ପାରୁ ନ ଥିଲେ । ତାଙ୍କ ମନରେ ଅହଂକାର ନ ଥିଲା । ସେ ଦୁଃଖୀମାନଙ୍କୁ ବହୁତ ଦାନ କରୁଥିଲେ । ମାତ୍ର କାହାରି ଆଗରେ କହିହେଉ ନ ଥିଲେ । ସେ ଯାହା ଯାହା କରୁଥିଲେ, ଭଲ କରି ବିଚାର କରି କରୁଥିଲେ । ତାଙ୍କୁ କେହି ସହଜେ ଠକି ପାରୁ ନ ଥିଲେ । ନଅ ଅଙ୍କ ସମୟରେ ସେ ପ୍ରତିଦିନ ଅନେକ ଲୋକଙ୍କୁ ମୁଢ଼ି ଜଳ ବାଣ୍ଟି, ସେମାନଙ୍କୁ ବଞ୍ଚାଇଥିଲେ । ତହିଁ ପୂର୍ବବର୍ଷ ଏ ଦେଶରେ

ଭଲ ବର୍ଷା ହୋଇ ନ ଥିବାରୁ ଅତି ଅଳ୍ପ ଧାନ ଫଳିଥିଲା । ସେତେବେଳେ ଏ ଦେଶରେ ରେଲ୍ ନ ଥିଲା କିମ୍ବା କଳ ଜାହାଜ ଆସୁ ନ ଥିଲା । ଏହେତୁରୁ ଅନ୍ୟ ଦେଶରୁ ଧାନ ଚାଉଳ ଆସିବା ବଡ଼ କଠିନ ଥିଲା । ଘରେ ଟଙ୍କା ଥାଉଁ ଥାଉଁ ଲୋକେ ଚାଉଳ ନ ପାଇ ମରିଗଲେ । ଏପରି ସମୟରେ ସେ ଲୋକମାନଙ୍କୁ ଚାଉଳ ଦାନ କରି ବଞ୍ଚାଇବାରୁ, ସମସ୍ତେ ତାଙ୍କୁ ଭଲ ବୋଲି କହିଲେ ।

ଯେଉଁ ଗରିବ ଲୋକମାନେ ଔଷଧ କିଣି ଖାଇ ପାରିବେ ନାହିଁ, ସେମାନଙ୍କ ପାଇଁ ସେ ଗୋଟିଏ ଡାକ୍ତରଖାନା ଫିଟାଇଲେ । ବାଳକ-ବାଳିକାମାନଙ୍କ ପଢ଼ିବାପାଇଁ ସେ ଚାରିଗୋଟି ସ୍କୁଲ ବସାଇଥିଲେ ।

ଶ୍ୟାମାନନ୍ଦ ଦେବଙ୍କର ଏହିସବୁ ଭଲ କାର୍ଯ୍ୟ ଦେଖି ଛୋଟ ଲାଟ ସାହେବ ତାଙ୍କୁ ରାଜା ଉପାଧି ଦେଲେ ।

## ସନ୍ଧ୍ୟା ।

ଅସ୍ତ ହେଲେ ଦିନମଣି   ହେଲା ଦିନ ଶେଷ
ଆସିଲେ ରଜନୀରାଣୀ   ଧରି କଳା ବେଶ ।

ସନ୍ଧ୍ୟା ହେଲା ସନ୍ଧ୍ୟା ହେଲା   ବୋଲି ପକ୍ଷିଗଣ
ରାବ ଦେଇ ଯେଝା ବାସେ   କରନ୍ତି ଗମନ ।

ଧୂଳି ଉଡ଼ାଇଣ ଦାଣ୍ଡେ   କରି ହମ୍ବା ରଡ଼ି
ଯାଉଛନ୍ତି ଗୋରୁପଲ   ଗୋଠରୁ ବାହୁଡ଼ି ।

ହଳକାମ ସାରି ଚଷା   ମହା ଆନନ୍ଦରେ
ନାନା ରଙ୍ଗ ଗୀତ ଗାଇ   ବାହୁଡ଼ଇ ଘରେ ।

ଘଞ୍ଚୁଁ ଘଞ୍ଚୁଁ ଅନ୍ଧକାର ଘୋଟଇ ଗଗନ
ଆବରଇ ଜଳ ସ୍ଥଳ ପର୍ବତ କାନନ ।

ରତ୍ନଦୀପ-ବଳୀ ପ୍ରାୟେ ତାରା କୋଟି କୋଟି
ଜଳୁଛନ୍ତି ଆକାଶରେ ହୋଇ ଗୋଟି ଗୋଟି ।

ଦିନ ଅନ୍ତେ ରାତ୍ର ଆସେ ଯାହାଙ୍କ ବିଧାନେ
ସୁମର ତାହାଙ୍କୁ ଏବେ ଅହେ ଶିଶୁମାନେ !

ସବ୍ ଶ୍ରୀଯୁକ୍ତ ମଧୁସୂଦନ ରାଓ ବାହାଦୁର ।



## GULAB SINGH'S SERIES OF TEXT BOOKS FOR SCHOOLS IN INDIA.

**A New Arithmetic for India Schools.**—By W. P. Workman, M.A., B.Sc., late Fellow of Trinity College, Cambridge, and J. Sime, LL.D., C.I.E., formerly Director of Public Instruction, Punjab.—2nd Edition—Price Re. 1-12-0—undoubtedly one of the best books on the subject now in use.

**Gulab Singh's New Series of Copy Books.**—Sloping Style—graceful running hand for rapid writing, Nos. 1—14, @ one anna each—the most perfect style of writing ever produced.

**Gulab Singh's New Series of Copy Books.**—Upright Style—bold, legible writings, Nos. 1—14, @ one anna each.

**Gulab Singh's New Series of Urdu Copy Books.**—Nos. 1—4. @ one anna each.

| | |
|---|---|
| **Urdu Primer**<br>**First Urdu Reader**<br>**Second do.**<br>**Third do.**<br>**Urdu-English Primer** | By Col. W. R. M. Holroyd, D.O.L., formerly Director of Public Instruction, Punjab — really model Books of their kind. |
| **Urdu Primer** (Illustrated) | By J. Sime, LL.D., C.I.E. |

*For any of these and other books apply to—*

LAL CHAND AND SONS

*Booksellers and Publishers,*

*76, Lower Circular Road, Calcutta.*

# MODEL TEXT BOOKS

*FOR*

## LOWER PRIMARY SCHOOLS

PREPARED BY THE BENGAL EDUCATION DEPARTMENT.

| | | | | Rs. | A. | P. |
|---|---|---|---|---|---|---|
| Bengali Reader | for | Infants | ... | 0 | 0 | 9 |
| „ | | Standard | I | 0 | 1 | 3 |
| Uriya Reader | „ | Infants | | 0 | 0 | 9 |
| | „ | Standard | I | 0 | 1 | 0 |
| „ | | „ | II ... | 0 | 1 | 6 |
| Urdu Reader | | Infants | ... | 0 | 1 | 0 |
| „ | „ | Standard | I | 0 | 1 | 0 |
| „ | | „ | II | 0 | 1 | 6 |
| Hindi Reader | | Infants | | 0 | 0 | 9 |
| „ | „ | Standard | I | 0 | 1 | 0 |
| „ | | „ | II | 0 | 1 | 6 |

LAL CHAND AND SONS,
*Booksellers and Publishers,*
*76, Lower Circular Road, Calcutta.*